ଜଗନ୍ମୋହନ ଲାଲ

କୃତ

# ବାବାଜୀ ନାଟକ

ସମ୍ପାଦନା

ଡକ୍ଟର ହେମନ୍ତ କୁମାର ଦାସ

ଇଣ୍ଡିଆନ ବୁକ୍ ଡିଷ୍ଟ୍ରିବ୍ୟୁଟର୍ସ

ବାଦାମବାଡ଼ି, କଟକ-୭୫୩୦୧୨

# ଜଗନ୍ମୋହନ ଲାଲ୍ କୃତ
# ବାବାଜୀ ନାଟକ

( ବାବାଜୀ ପାଠ୍ୟ ସହିତ )

●

ସମ୍ପାଦନା

ଡକ୍ଟର ହେମନ୍ତ କୁମାର ଦାସ

●

ପ୍ରକାଶକ

ନବକିଶୋର ବେହେରା

ଇଣ୍ଡିଆନ ବୁକ୍ ଡିଷ୍ଟ୍ରିବ୍ୟୁଟର୍ସ

ବାଦାମବାଡ଼ି, କଟକ-୭୫୩୦୧୨

●

ପ୍ରଥମ ପ୍ରକାଶ

୧୯୯୫

●

ମୁଦ୍ରଣ

ଶ୍ରୀ ଅରବିନ୍ଦ ଆର୍ଟ ପ୍ରେସ

ଆଲିଶା ବଜାର କଟକ-୨

●

ମୂଲ୍ୟ—ସାଧାରଣ—ପଚିଶ ଟଙ୍କା

ଶୋଭନ— ତିରିଶ ଟଙ୍କା

**JAGANMOHAN LAL KRUTA**
**BABAJI NATAK**

●

Edited by

**Dr. Hemant Kumar Das**

●

Published by

Nabakishore Behera

**Indian Book Distributers**

Badambadi Cuttack-12

●

1st Edition 1995

●

Printed by

**Shree Aurobinda Art Press**

Aiishabazar Cuttack-2

●

Price **Twenty five only**

Deluxe **Thirty only**

# ଏ ସଂସ୍କରଣ ସମ୍ପର୍କରେ

ସ୍ୱର୍ଗତଃ କବିଚନ୍ଦ୍ର କାଳୀଚରଣ ଖଣ୍ଡିଏ ଛିନ୍ନ ପୁସ୍ତକକୁ ସମ୍ବଳ କରି 'ବାବାଜୀ' ନାଟକର ପ୍ରଥମ ସଂସ୍କରଣ ପ୍ରକାଶ କରିଥିଲେ । ସେ ବହିଟିକୁ ମୁଁ ଦେଖିଥିଲି । ତା'ର ଶେଷ ପୃଷ୍ଠାଟି ନଥିଲା ଏବଂ ମଝିରେ ମଝିରେ ମଧ୍ୟ କିଛି ଅଂଶ କୀଟଦଂଷ୍ଟ୍ର ହୋଇ ପଡ଼ିଥିଲା । କାଳୀବାବୁ ତାକୁ ଯଥାସମ୍ଭବ ସଜାଡ଼ି ଦେଇ ପୁସ୍ତକଟିକୁ ପ୍ରକାଶ କରିଥିଲେ । କଟକର ଅନ୍ୟ ଏକ ପ୍ରକାଶନ ସଂସ୍ଥା ମଧ୍ୟ ଏହାର ଏକ ସଂସ୍କରଣ ପ୍ରକାଶ କରିଛନ୍ତି । କାଳୀଚରଣଙ୍କ ପୁସ୍ତକ ହେଉଛି ତାହାର ଆଧାର । 'ସଙ୍ଗ' ନାଟକ ପ୍ରକାଶ କଲାବେଳେ 'ବାବାଜୀ' ନାଟକର ସେହିଭଳି ଏକ ପୂର୍ଣ୍ଣାଙ୍ଗ ରୂପ ପ୍ରକାଶ କରିବାର ଚିନ୍ତା ମୋ ମନକୁ ଆସିଥିଲା । ଏଥିପାଇଁ ମୁଁ ମୂଳ ପୁସ୍ତକର ଏକ ପୂର୍ଣ୍ଣାଙ୍ଗ ପ୍ରତି ଅନ୍ୱେଷଣ କରୁଥିଲି । ସୌଭାଗ୍ୟକୁ ତାହା ମୋତେ ମିଳିଲା ଅଧ୍ୟାପକ ଶ୍ରୀ ବେଣୁଧର ରାଉତଙ୍କ ପାଖରୁ । ଏଥି ସହିତ ଏକ ମୁଖବନ୍ଧ ଯୋଡ଼ି ମୁଁ ଏହାର ପ୍ରକାଶ କରିବା ନିମନ୍ତେ ସ୍ଥିର କଲି । ଆଇ. ଡି. ଡ଼ି.ହ ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ନବ କିଶୋର ବେହେରା ଆନନ୍ଦରେ ଏହାର ପ୍ରକାଶନ ଦାୟିତ୍ୱ ଗ୍ରହଣ କଲେ । ଅତୀତରେ ସେ ହିଁ 'ସଙ୍ଗ ନାଟକ'କୁ ପ୍ରକାଶ କରିଥିଲେ । ଏହି ଅବସରରେ ମୁଁ ଅଧ୍ୟାପକ ଶ୍ରୀ ରାଉତ ଓ ପ୍ରକାଶକ ଶ୍ରୀ ବେହେରାଙ୍କୁ ମୋର କୃତଜ୍ଞତା ଜଣାଉଛି । 'ବାବାଜୀ' ନାଟକର ପ୍ରଥମ ପୂର୍ଣ୍ଣାଙ୍ଗ ରୂପ ହାତରେ ଧରି ମୋର ଯେଉଁ ଆନନ୍ଦ ହୋଇଥିଲା ଆଶା କରୁଛି, ଏ ଦେଶର ଗବେଷକ, ନାଟ୍ୟପ୍ରେମୀ ପାଠକମାନେ ସେଇଭଳି ଆନନ୍ଦିତ ହେବେ ।

ହେମନ୍ତ କୁମାର ଦାସ

୧୪ । ୧୦ । ୯[illegible]

କେରି, ମାର୍ଶମାନ୍, ଲେସିଓ ସଟନ୍ ପ୍ରଭୃତି ମିଶନାରୀମାନେ । ସେମାନେ ବାଇବେଲର ଓଡ଼ିଆ ଅନୁବାଦ କରାଇଲେ । ନବପ୍ରତିଷ୍ଠିତ ସ୍କୁଲଗୁଡ଼ିକରେ ପାଠ୍ୟପୁସ୍ତକର ଅଭାବ ଅନୁଭୂତ ହେବାରୁ ବଙ୍ଗଳା ଭାଷାରୁ କିଛି ଅନୁବାଦ ମଧ୍ୟ କରାଗଲା । ଏହିଭଳି ଭାବରେ ଗଦ୍ୟ ସାହିତ୍ୟର ବିକାଶ ହେଲା । ଦୀପିକା, ବୋଧିକା ପ୍ରଭୃତି ସେ କାଳର ପତ୍ରପତ୍ରିକା-ଗୁଡ଼ିକ ମଧ୍ୟ ଏ ଦିଗରେ ବିଶେଷ ସାହାଯ୍ୟ କଲେ ।

ପରମ୍ପରାର ଭିତ୍ତିଉପରେ ପରିବର୍ତ୍ତନର ଇମାରତ ପ୍ରସ୍ତୁତ ହେବାକୁ ଆରମ୍ଭ ହେଲା । ତେବେ ଏହା ଅନାୟାସରେ ହୋଇପାରି ନଥିଲା । ରକ୍ଷଣଶୀଳ ଗୋଷ୍ଠୀ ଓ ପ୍ରଗତିବାଦୀ ଗୋଷ୍ଠୀ ମଧ୍ୟରେ ଏଥିପାଇଁ ତୀବ୍ର ସଂଘର୍ଷ ଉପୁଜିଥିଲା । ଦୀର୍ଘକାଳର ଅଭ୍ୟାସକୁ କ୍ଷିପ୍ରଗତିରେ ବଦଳାଇଦେବା ନିମନ୍ତେ ଯେଉଁ ଉଦ୍ୟମ ଆରମ୍ଭ ହୋଇଗଲା, ତାହାହିଁ ହେଉଛି ଏହାର କାରଣ । ଯାହାହେଉ, ସମଗ୍ର ଦେଶରେ ଯେତେବେଳେ ପରିବର୍ତ୍ତନର ପ୍ରବଳ ସ୍ରୋତ ବହି ଚାଲିଥିଲା, ସେତେବେଳେ ଓଡ଼ିଶାରେ ଦୀର୍ଘକାଳ ତାହାକୁ ରୋକିବା ସମ୍ଭବପର ହେଲନାହିଁ । ପ୍ରଗତିବାଦୀମାନଙ୍କର ବିଜୟ ହେଲା । ଜଗନ୍ମୋହନ ଲାଲଙ୍କର ଜନ୍ମ ହେଉଛି ପ୍ରାଚ୍ୟ ପାଶ୍ଚାତ୍ୟ ଭାବଧାରା ସଂଘର୍ଷର ଏହି ଅନ୍ତର୍ବର୍ତ୍ତୀ କାଳରେ ।

ଲାଲ୍ ସେ ଯୁଗରେ ପାଶ୍ଚାତ୍ୟ ଶିକ୍ଷା ଲାଭ କରିବାର ସୁଯୋଗ ପାଇଥିଲେ । ସିରସ୍ତାଦାର ଅଫିସରେ ଭଲ ଚାକିରିଟିଏ ମଧ୍ୟ ଥିଲା । ହୁଏତ ସେ ଯୁଗରେ ପ୍ରତ୍ୟେକ ଶିକ୍ଷିତ ସଚେତନ ନାଗରିକ ଯେଉଁଭଳି ଜାତୀୟତା ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଉଠି ନୂତନ କିଛି କରିବାକୁ ନିଜର ଅବଶ୍ୟ କର୍ତ୍ତବ୍ୟ ମନେ କରୁଥିଲେ, ଲାଲ ମହାଶୟଙ୍କର ଚିନ୍ତା ମଧ୍ୟ ସେହି ଚିନ୍ତାଦ୍ୱାରା ପ୍ରେରିତ ହୋଇଥିଲା । ପାଶ୍ଚାତ୍ୟ ଶିକ୍ଷା ଲାଭର ସୁଯୋଗ ତାଙ୍କ ଚିନ୍ତାର ଦିଗନ୍ତକୁ ପ୍ରସାରିତ କରି ଦେଇଥିଲା । ମଧ୍ୟଯୁଗର ଓଡ଼ିଶା କୁସଂସ୍କାର, ଅନ୍ଧବିଶ୍ୱାସ, ଧର୍ମଧ୍ୱଜୀମାନଙ୍କର ଭଣ୍ଡାମି ଦ୍ୱାରା ଯେଉଁଭଳି ଅଧଃପତନ ପଥରେ ଦ୍ରୁତ ଗତିରେ ଆଗେଇ ଚାଲିଥିଲା, ତାହା ତାଙ୍କର ହିତୈଷୀ ମନରେ ଗଭୀର ରେଖାପାତ କରିଥିଲା । ପରିବର୍ତ୍ତନର ଶଙ୍ଖଧ୍ୱନି ଲାଲ ମହାଶୟଙ୍କ କାନରେ ବାଜୁଥିଲା । ପ୍ରାଚୀନକୁ ବିଦାୟ ଦେଇ ନବୀନକୁ ସ୍ୱାଗତ ଜଣାଇବା ନିମନ୍ତେ ଗୋଟାଏ ଜାତିକୁ ପ୍ରସ୍ତୁତ କରିବା ଏକାନ୍ତ ଆବଶ୍ୟକ ହୋଇପଡ଼ିଥିଲା । ସଂସ୍କାର ରୂପକ ଅସ୍ତ୍ର ହାତରେ ଧରି ଲାଲ୍ ମହାଶୟ ଏ ଦୁରୂହ ଦାୟିତ୍ୱଟିକୁ ନିଜ କାନ୍ଧକୁ ଉଠାଇ ନେଲେ । ଜଗନ୍ମୋହନ କେବଳ କଥା ଉପରେ ବିଶ୍ୱାସ କରି ବସି ରହୁନଥିଲେ । ବରଂ କାର୍ଯ୍ୟ ହିଁ ଥିଲା ତାଙ୍କ ଜୀବନର ଆଦର୍ଶ । ସେ ଯୁଗରେ ସମାଜପତିମାନଙ୍କର ତୀବ୍ର ପ୍ରତିରୋଧକ ଭ୍ରୂକ୍ଷେପ ନକରି ସେ ନିଜର ବିଧବା କନ୍ୟା ଲବଙ୍ଗର ପୁନର୍ବିବାହ ଦେଇ ସମାଜ ସମ୍ମୁଖରେ ଏକ ବଳିଷ୍ଠ ଆଦର୍ଶ ପ୍ରତିଷ୍ଠା କରିଥିଲେ । ଏ ବିବାହ ସେ ସମୟର ଶିକ୍ଷିତ ଗୋଷ୍ଠୀ ଦ୍ୱାରା ଅଭିନନ୍ଦିତ ହୋଇଥିବାର ପତ୍ରପତ୍ରିକାରୁ ଜଣାଯାଇଥାଏ ।

ପାଶ୍ଚାତ୍ୟ ଶିକ୍ଷାର କ୍ରମିକ ପ୍ରସାର ସେ ଯୁଗର ମଧ୍ୟବିତ୍ତ ଗୋଷ୍ଠୀ ମଧ୍ୟରେ ଏକ ପ୍ରତିବାଦ ପ୍ରବୃତ୍ତି'ର ସୃଷ୍ଟି କରିଥିଲା । ଜଗନ୍ମୋହନ ନିଜର ଲେଖାଲେଖି ମାଧ୍ୟମରେ ପ୍ରତିବାଦ ତ ଜଣାଉଥିଲେ । ପ୍ରୟୋଜନ ହେଲେ କାର୍ଯ୍ୟରେ ପରିଣତ କରି ବାକ୍ୟ ଓ କାର୍ଯ୍ୟର ସମନ୍ୱୟ ଘଟାଉଥିଲେ । ହୁଏତ ଏଇଥିପାଇଁ ସାହିତ୍ୟ କ୍ଷେତ୍ରକୁ ତାଙ୍କର ଆଗମନ ହୋଇଥିବା ଲକ୍ଷ୍ୟ କରାଯାଇପାରେ ଯେ, ଯୁଗପ୍ରବର୍ତ୍ତକ କବି ରାଧାନାଥ କବି ଖ୍ୟାତି ପାଇବା ପୂର୍ବରୁ ଲାଲ ମହାଶୟଙ୍କ ପ୍ରଥମ କାବ୍ୟ 'ଭ୍ରମରଞ୍ଜନ' (୧୮୭୮ ପ୍ରକାଶିତ ହୋଇସାରିଥିଲା । ଏହା ପର୍ଣ୍ଣେଲଙ୍କ Hermit କାବ୍ୟର ଅନୁବାଦ । ଏହାପରେ ଜଗନ୍ମୋହନ ବିଷୟ ବଦଳାଇ ନାଟକ କ୍ଷେତ୍ରକୁ ଚାଲି ଆସିଲେ, ଏବଂ ଜୀବନକାଳ ମଧ୍ୟରେ ଗୃବଖଣ୍ଡି ନାଟକ ରଚନା କରିଥିଲେ । ଯାହାହେଉ, ଜଗନ୍ମୋହନଙ୍କ କାବ୍ୟ ପ୍ରତିଭା ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ, ସେ ସମୟରେ ଓଡ଼ିଶାର ନାଟ୍ୟ ଜଗତର ଅବସ୍ଥା କ'ଣ ଥିଲା, ତାହା ପରୀକ୍ଷା କରି ଦେଖାଯାଉ ।

**ଓଡ଼ିଶାରେ ନାଟକାଭିନୟ** :—ଜଗନ୍ମୋହନ ହେଉଛନ୍ତି ଓଡ଼ିଆ ଭାଷାର ପ୍ରଥମ ମଞ୍ଚ ନାଟ୍ୟକାର । 'ବାବାଜୀ' ନାଟକ ହେଉଛି ଏକମୁଖୀ ମଞ୍ଚର ପ୍ରଥମ ଓଡ଼ିଆ ନାଟକ । ଏହା ପୂର୍ବରୁ ଅବଶ୍ୟ 'ରଘୁନାଥ ପରିଚ୍ଛା'ଙ୍କ 'ଗୋପୀନାଥ ବଲ୍ଲଭ ନାଟକ' (୧୮୭୮) ପ୍ରକାଶିତ ହୋଇସାରିଥିଲା । ମାତ୍ର ଆଧୁନିକ ନାଟ୍ୟତତ୍ତ୍ୱ ଅନୁସାରେ ଏହା ନାଟକ ପଦବାଚ୍ୟ ନୁହେଁ । ସେ ସମୟର ପତ୍ରପତ୍ରିକାମାନେ ମଧ୍ୟ ଏହି ମତ ପ୍ରକାଶ କରିଥିଲେ । ପୁଣି ୧୮୭୮ ମସିହା ବେଳକୁ ଦକ୍ଷିଣ ଓଡ଼ିଶା ତ ଦୂରର କଥା, ଖୋଦ୍ କଟକ ସହରବାସୀ ମଧ୍ୟ ପ୍ରସେନିୟମ ମଞ୍ଚ କି ପଦାର୍ଥ ତାହା ଦେଖି ନଥିଲେ । କାରଣ କଟକର କାଥଲିକ୍ ମିଶନ ସ୍କୁଲର ଛାତ୍ରମାନେ ୧୮୭୨ ମସିହା ଜୁଲାଇ ୨୭ ତାରିଖ ଦିନ ନିଜ ସ୍କୁଲରେ ପ୍ରଥମ ଥର ପାଇଁ ଗୋଟିଏ ଅସ୍ଥାୟୀ ମଞ୍ଚ ନିର୍ମାଣ କରି ସେକ୍ସପିୟରଙ୍କ ନାଟକର କିଛି ଅଂଶ ଅଭିନୟ କରିଥିଲେ । ଏହା ହିଁ ଓଡ଼ିଶାରେ ଏକମୁଖୀ ମଞ୍ଚର ପ୍ରଥମ ଆତ୍ମପ୍ରକାଶ ।

ଏକମୁଖୀ ମଞ୍ଚ ନାଟକର ପ୍ରଚଳନ ପୂର୍ବରୁ ଓଡ଼ିଆ ଦର୍ଶକମାନେ ଦାଣ୍ଡନାଚ, ଗୋଟିପୁଅ ନାଚ, ଯାତ୍ରା, ଲୀଳା ପ୍ରଭୃତି ଲୋକନାଟକର କିଛି ବିଷୟ ମାଧ୍ୟମରେ ମନୋରଞ୍ଜନ କରୁଥିଲେ । ଏସବୁଥିରେ ଶସ୍ତା ହାସ୍ୟରସ, କିଛି କରୁଣରସ ଏବଂ ସ୍ଥୂଳ ଆଦିରସର ପରିମାଣ ଅଧିକ ଥାଏ । ଶିକ୍ଷିତ ସମାଜ ଏହାକୁ ଭଲ ଭାବରେ ଗ୍ରହଣ କଲେ ନାହିଁ । ସେତେବେଳକୁ ବ୍ରାହ୍ମଧର୍ମର ପ୍ରଭାବରେ ଏକ ଶୁଚିବାଦୀ ଆନ୍ଦୋଳନ ସମଗ୍ର ଦେଶରେ ଆରମ୍ଭ ହୋଇଥିବାର ଦେଖିବାକୁ ମିଳୁଛି । ଏହା ତାହାର ପ୍ରଭାବ ହୋଇପାରେ କିମ୍ବା ସେ ସମୟରେ ଭାଷା ସଂସ୍କାର, ଲିପି ସଂସ୍କାର ପ୍ରଭୃତି ଭଳି ଯାତ୍ରା-ସଂସ୍କାର କ୍ରମରେ ଏକ ଚିନ୍ତା ସୃଷ୍ଟି ହୋଇଥିବା ମଧ୍ୟ ଅସମ୍ଭବ ନୁହେଁ । ଦୀପିକା, ଲେଖିଥିଲେ—ବର୍ତ୍ତମାନ ଓଡ଼ିଶାରେ ଯାହାକୁ ଯାତ୍ରା ବୋଲିଯାଏ । ତାହା ରାମଲୀଳା,

କୃଷ୍ଣଲୀଳା, ସୁଭଦ୍ରା ହରଣ ଅଟଇ । ପ୍ରଥମ ଦୁଇଟି ବହୁସ୍ଥଳରେ ଦେଖାଯାଏ । × ×
ଆମ୍ଭମାନଙ୍କ ବିଶ୍ୱାସ ଏହି ଯେ ସଙ୍ଗୀତ କାହାକୁ ବୋଲଯାଏ । ଯାତ୍ରାବାଲାମାନେ
ଜାଣନ୍ତି ନାହିଁ । କେବଳ ସଜବେଶ ହୋଇ ଗୁଡ଼ାଏ ପୋଥି ବୋଲନ୍ତି ବା କଥାବାର୍ତ୍ତା
କରନ୍ତି । ନାନାପ୍ରକାର କଦର୍ଯ୍ୟ ଓ ଭଣ୍ଡରୂପ ଦେଖାଇ ଓ ଅଶ୍ଳୀଳ ବାକ୍ୟ ଉଚ୍ଚାରଣ କରି
ଦର୍ଶକମାନଙ୍କୁ ସନ୍ତୁଷ୍ଟ କରନ୍ତି । (ଉ. ଦ. ୨୮-୧୦-୧୮୭୭) ତେବେ ମନୋରଞ୍ଜନ
ନିମନ୍ତେ ଏହାକୁ ଦେଖିବା ବ୍ୟତୀତ ଦର୍ଶକମାନଙ୍କର ଅନ୍ୟ ଉପାୟ ନଥିଲା । ଏହି
ସମୟରେ ବାଲେଶ୍ୱରର କୌଣସି ଯାତ୍ରାଦଳ ଭଲ ଅଭିନୟ ଦେଖାଉଥିବାର ଶୁଣି
ଦୀପିକା ପୃଷ୍ଠାରେ ସେମାନଙ୍କ ପ୍ରଶଂସା ମଧ୍ୟ କରାଯାଉଛି । ଭଲ ଅଭିନୟ ଦେଖିବା ପାଇଁ
ଓଡ଼ିଆ ଦର୍ଶକମାନଙ୍କର ବ୍ୟଗ୍ରତା ଏଥିରୁ ଅନୁଭୂତ ହୁଏ । ପଡ଼ୋଶୀ ପ୍ରଦେଶ
ସେତେବେଳକୁ ଏକମୁଖୀ ମଞ୍ଚାଭିନୟରେ ବେଶ୍ ଅଗ୍ରଗତି କରି ସାରିଲାଣି ଯଦିଓ
ଯାତ୍ରା, ଲୀଳାଦି ଅଭିନୟ ପାଇଁ ଏବଂ ମଞ୍ଚ ନାଟକ ପାଇଁ ଏଠାକାର ଗୋପାଳ ଉଡ଼େ,
ରୂପଚାନ୍ଦ ପକ୍ଷୀ ପ୍ରଭୃତି କଳାକାରମାନଙ୍କର ଅବଦାନକୁ ସେ ଦେଶର ନାଟ୍ୟ
ସମାଲୋଚକମାନେ ଦ୍ୱିଧାହୀନ ସ୍ୱରରେ ପ୍ରଶଂସା କରିଛନ୍ତି । କଟକରେ ମଧ୍ୟ ୧୮୭୮
ମସିହାରେ ପ୍ରଥମ ବଙ୍ଗଳା ନାଟକର ଅଭିନୟ ହୋଇଥିଲା ବୋଲି ରାମଶଙ୍କର
ଲେଖିଛନ୍ତି । ତେବେ ଜଗନ୍ମୋହନ ମାହାଙ୍ଗାରେ ଚଇ କୁଳଦେବତା ରାଧାକାନ୍ତଙ୍କ
ନାମରେ ୧୮୭୯ ମସିହାରେ 'ରାଧାକାନ୍ତ ରଙ୍ଗମଞ୍ଚ' ସ୍ଥାପନ କରି ସେଠାରେ ବଙ୍ଗଳା
ନାଟକର ଅଭିନୟ କରାଉଥିଲେ ବୋଲି ଜଣାଯାଏ ।

ମଞ୍ଚ ନାଟ୍ୟାଭିନୟ ଓଡ଼ିଶାକୁ ଆମଦାନି ହେଲା କେତେକ ବଙ୍ଗୀୟଙ୍କ ଦ୍ୱାରା ।
ଏତେବେଳକୁ ଓଡ଼ିଶାରେ ଇଂରେଜ ଶାସନର ଅର୍ଦ୍ଧଶତକ ଅତିକ୍ରାନ୍ତ ହୋଇସାରି
ଥିଲା । ଶାସନରେ ସାହାଯ୍ୟ କରିବାକୁ କିଛି ବଙ୍ଗୀୟ ତ ଆସିଥିଲେ । ସୂର୍ଯ୍ୟାସ୍ତ ଆଇନ
ଅନେକ କପର୍ଦ୍ଦକଶୂନ୍ୟ ବଙ୍ଗୀୟଙ୍କୁ ଏ ଦେଶର ଭାଗ୍ୟବିଧାତା ରୂପରେ ଉପସ୍ଥାପିତ
କଲା । ସେମାନେ ହେଲେ ନୂତନ ଜମିଦାର ଶ୍ରେଣୀ । ଅମାପ କ୍ଷମତା, ପ୍ରଚୁର ଅର୍ଥ
ସାଙ୍ଗକୁ ଯଥେଷ୍ଟ ଅବସର ଜୀବନକୁ ଉପଭୋଗ କରିବାର ସମସ୍ତ ଉପାଦାନ ସେମାନଙ୍କ
ହାତପାଆନ୍ତାରେ । ମନୋରଞ୍ଜନର ଏ ନୂତନ ଉପାଦାନଟିକୁ ତେଣୁ ସେଇମାନେ
ଓଡ଼ିଶାକୁ ଆମଦାନି କଲେ । କାରଣ ଅଷ୍ଟାଦଶ ଶତକର ଶେଷ ପାଦରୁ ସେ ଦେଶରେ
ପ୍ରସେନିୟମ ମଞ୍ଚର ପ୍ରୟୋଗ କରାଯାଇ ସେତେବେଳକୁ ପ୍ରତିଷ୍ଠା ପାଇସାରିଥିଲା ।
ଓଡ଼ିଶା ଏକ ପରିବର୍ତ୍ତନ ନିମନ୍ତେ ପ୍ରସ୍ତୁତ ହୋଇ ରହିଥିଲା ନବ୍ୟ ଶିକ୍ଷିତ ସମ୍ପ୍ରଦାୟ
ପାରମ୍ପରିକ ଲୋକ-ନାଟକ ସହ ସମ୍ପର୍କ ଛିନ୍ନ କରି ସାରିଥିଲେ । ଏଭଳି ଭାବରେ
ମଞ୍ଚ ନାଟକ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ ହୋଇ ରହିଥିଲା । ପ୍ରଥମେ ଇଂରାଜୀ ନାଟକ,
ତା'ପରେ ବଙ୍ଗଳା ନାଟକ ଏବଂ ତା'ପରେ ଓଡ଼ିଆ ନାଟକ ମାଧ୍ୟମରେ ଏକମୁଖୀ

ମଞ୍ଚାଭିନୟର ଶ୍ରୀ ଗଣେଶ ଦେଲ । ଜଗନ୍ମୋହନ ଲାଲ ହେଲେ ଆଧୁନିକ ଓଡ଼ିଆ ନାଟକର ପ୍ରଥମ ପୁରୁଷ ।

ଜଗନ୍ମୋହନ କାବ୍ୟ, ଇତିହାସ ଇତ୍ୟାଦି ଲେଖିଥିଲେ ହେଁ ନାଟକ ଥିଲା ତାଙ୍କର ନିଜସ୍ୱ ଜଗତ । କାକାଶ, ସତୀ, ପ୍ରୀତି ଓ ବୃଦ୍ଧ ବିବାହ ନାମକ ସ୍ୱଳ୍ପଖଣ୍ଡି ନାଟକ ସେ ଲେଖିଛନ୍ତି ଏବଂ ପ୍ରତ୍ୟେକ ନାଟକ କୌଣସି ନା କୌଣସି କାରଣର ବାହକ ହୋଇଛି । ନାଟକର ବିଷୟ ଘଟଣା ବା ଚରିତ୍ର ପାଇଁ ତାଙ୍କୁ ବାହାର ଆଡ଼େ ଆଖି ପକାଇବାକୁ ହୋଇନାହିଁ । ନିଜ ପରିବେଶ, ଆପଣା ସମାଜ ଏବଂ ପରିଚିତ ଲୋକମାନଙ୍କ ଭିତରୁ ହିଁ ସେ ଉପାଦାନ ସଂଗ୍ରହ କରିଛନ୍ତି ସମାଜ ସଚେତନତା ଥିଲା ତାଙ୍କର ପ୍ରାଣରେ । ଏହାର ଦୋଷତ୍ରୁଟି, ସବଳତା, ଦୁର୍ବଳତା ବିଶ୍ଳେଷଣ କରିବା ଥିଲା, ତାଙ୍କର ଲକ୍ଷ୍ୟ । ଏଥିପାଇଁ ସେ ନାଟକର ତତ୍ତ୍ୱ ସମ୍ପର୍କରେ ବିଶେଷ ଚିନ୍ତିତ ନ ଥିଲେ । ଗତାନୁଗତିକ 'Well made play' କହିଲେ ଯାହା ବୁଝାଏ, ତାଙ୍କର ନାଟକ ହୁଏତ ତାହା ହୋଇପାରି ନାହିଁ । ତେବେ ନାଟକ ପାଇଁ ତାଙ୍କର ଯେଉଁ କମିଟମେଣ୍ଟ ଏହାକୁ କେହି ସନ୍ଦେହ କରିପାରି ନାହାନ୍ତି ।

ଭରତ ନାଟକକୁ ଲୋକବୃତ୍ତର ଅନୁକରଣ ବୋଲି ମନେକରି କହନ୍ତି—

ନାନା ଭାବୋପସମ୍ପନ୍ନଂ ନାନାବସ୍ଥାନ୍ତରାତ୍ମକମ୍
ଲୋକବୃତ୍ତାନୁକରଣଂ ନାଟ୍ୟମେତନ୍ମୟା କୃତମ ।

ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱବିତ୍ ଆରିଷ୍ଟଟଲ ମଧ୍ୟ ଏହି 'ଅନୁକରଣତତ୍ତ୍ୱ' ବା 'Theory of imitation' ଉପରେ ଗୁରୁତ୍ୱ ଦେଇଛନ୍ତି । ସାଧାରଣ ଲୋକର ଭାବ, ଭାବ, ବିଳାସର ଅନୁକରଣ କରିବା ହେଉଛି ନାଟ୍ୟକାରର ପ୍ରଥମ କର୍ତ୍ତବ୍ୟ । ଏହି ଅନୁକରଣ ହେଉଛି ଏକ କଳା । ଅଳ୍ପ ଅନୁକରଣ ସୃଷ୍ଟିକୁ କଳାହୀନ କରିଦିଏ । ମନୋରଞ୍ଜନ ନାଟକର ଏକମାତ୍ର ଲକ୍ଷ୍ୟ ନୁହେଁ । ଏହା ସହିତ ଲୋକଶିକ୍ଷା ଓ ସଂସ୍କୃତି ସଚେତନତା ସୃଷ୍ଟି ମଧ୍ୟ ଯୁକ୍ତ ହୋଇଥାଏ । ସମସାମୟିକ ସମାଜ ହିଁ ହେବ ନାଟ୍ୟକାରଙ୍କର ଗବେଷଣାର କ୍ଷେତ୍ର । ଯେଉଁ ଜୀବନ ତାଙ୍କ ଆଗରେ ପ୍ରସାରିତ, ତାକୁ ହିଁ ସେ ଦେଖିବେ, ପରୀକ୍ଷା କରିବେ ଏବଂ ତାକୁ ବିଶ୍ଳେଷଣ କରିବେ ନିଜ ସୃଷ୍ଟିରେ । ତେବେ ସୃଷ୍ଟି କେବଳ ଜୀବନରେ ଏକ ଫଟୋଗ୍ରାଫିକ ଚିତ୍ର ହେଲେ ଚଳିବ ନାହିଁ । ଯାହା ଘଟିନାହିଁ ଅଥଚ ଘଟିବାର ପୂର୍ଣ୍ଣ ସମ୍ଭାବନା ରହିଛି ସେସବୁ ସମ୍ପର୍କରେ ସୂଚନା ଦେବାରେ ହିଁ ସ୍ରଷ୍ଟାଙ୍କର କୃତିତ୍ୱ ।

ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଦୃଶ୍ୟ କାବ୍ୟ ହୋଇଥିବାରୁ ସମାଜ ପ୍ରତି ନାଟକର ଦାୟିତ୍ୱ ବୋଧହୁଏ ସର୍ବାଧିକ । କାରଣ ପଢ଼ିବା ଓ ଦେଖିବା ଭିତରେ

ଶେଷଟିର ପ୍ରଭାବ ଜୀବନ ଉପରେ ଅଧିକ । ଏଇଥି ପାଇଁ କୁହାଯାଏ, A nation is known by its theatre. ମଞ୍ଚ ଦେଶ ଓ ଜାତିର ଅଭ୍ୟୁନ୍ନତି ଘଟାଇବାରେ ଏକ ବିଶେଷ ଭୂମିକା ଗ୍ରହଣ କରେ । ଜାତିର ଜୀବନ ହିଁ ରଙ୍ଗମଞ୍ଚରେ ଅଭିନୟ ମାଧ୍ୟମରେ ପ୍ରକଟିତ ହୁଏ ।

ଏହି ସବୁ ମନ୍ତବ୍ୟର ପରିପ୍ରେକ୍ଷୀରେ ଜଗନ୍ମୋହନଙ୍କ ନାଟ୍ୟ ସାହିତ୍ୟର ଆଲୋଚନା କଲେ, ନିରାଶ ହେବାକୁ ହେବ ନାହିଁ । ଜଗନ୍ମୋହନ ଅନୁକରଣ କରିଛନ୍ତି, ମାତ୍ର ତାହା ଅନ୍ଧାନୁକରଣ ନୁହେଁ । ତାଙ୍କର ଜହୁରୀ ଆଖି ଯେଉଁଠି ବୈଚିତ୍ର୍ୟ ଲକ୍ଷ୍ୟ କରିଛି ସେଇଆଁକୁ ଗୋଟାଇ ଆଣିଛି । ନିଜର ସଂସ୍କୃତି ପ୍ରତି ତାଙ୍କର ଅକୁଣ୍ଠ ମମତା ସମ୍ପର୍କରେ ତାଙ୍କର ପ୍ରଥମ ନାଟକ 'ବାବାଜୀ'ରୁ ହିଁ ସୂଚନା ମିଳିଥାଏ । ପରମ୍ପରାର ସୁରକ୍ଷା ଯେ ଏକ ସଂସ୍କୃତିବନ୍ତ ଜାତିର ଲକ୍ଷଣ, ଏହା ସେ ପୂର୍ବୋକ୍ତ ନାଟକରେ ଘୋଷଣା କରିଛନ୍ତି । ଏହା ପଛରେ ରହିଛି ନାଟ୍ୟକାରଙ୍କର ଲୋକଶିକ୍ଷା ଦେବାର ଏକ ସାଧୁ ଉଦ୍ଦେଶ୍ୟ ।

ନାଟ୍ୟକାର ରୂପେ ଜଗନ୍ମୋହନ ଏଇଥିପାଇଁ ସ୍ମରଣୀୟ ଯେ, ଓଡ଼ିଆରେ ଯେତେବେଳେ ନାଟକ ରଚିତ ହୋଇ ନ ଥିଲା, ସେ ପ୍ରଥମେ ସାହସ କରି ଖଣ୍ଡିଏ ନାଟକ ରଚନା କରି, ତାହାର ଅଭିନୟ କରାଇଥିଲେ ଏବଂ ମୁଦ୍ରିତ କରାଇଥିଲେ ମଧ୍ୟ । ପରମ୍ପରାର ସୃଷ୍ଟି ପାଇଁ ଅନୁକରଣ ବ୍ୟତୀତ ବାଟ ନ ଥାଏ । ଓଡ଼ିଆ ଭାଷାର ପ୍ରଥମ ନାଟକ ବାବାଜୀ କିନ୍ତୁ ଅନ୍ୟ ଭାଷା ନାଟକର ଅନୁକରଣ ପୁଷ୍ଟ ନୁହେଁ । ନିଜ ପାଇଁ ଏକ ସ୍ୱତନ୍ତ୍ର ପରମ୍ପରା ସୃଷ୍ଟି ନିମନ୍ତେ ସତତ ପ୍ରୟାସୀ । ଏହାକୁ ଆମେ ସ୍ରଷ୍ଟାଙ୍କର ମୌଳିକ ଚିନ୍ତା ରୂପେ ସ୍ୱୀକୃତି ଦେବାକୁ ବାଧ୍ୟ ।

ଜଗନ୍ମୋହନ ଜଣେ ବହୁସ୍ରଷ୍ଟା ଲେଖକ ନ ଥିଲେ । ଜୀବନ ଓ ଜୀବିକାର ପୋଷଣରେ ଯେଉଁ ସ୍ୱଳ୍ପ ଅବସର ତାଙ୍କୁ ମିଳିଥିଲା, ସେତିକ ସେ ସାହିତ୍ୟ ସେବାରେ ଲଗାଇଥିଲେ । ସର୍ବମୋଟ ତାଙ୍କର ଛଅଟି ରଚନା ଏ ପର୍ଯ୍ୟନ୍ତ ଉପଲବ୍ଧ ହୋଇଛି । ସେଗୁଡ଼ିକ ହେଉଛି : (କ) ଭ୍ରମ ଭଞ୍ଜନ (କାବ୍ୟ) - ୧୮୬୮ । ଏହା ଇଂରେଜୀ କାବ୍ୟର ଅନୁସରଣରେ ରଚିତ ବୋଲି ସୂଚିତ ହୋଇଛି । (ଖ) ବାବାଜୀ (ନାଟକ) ୧୮୭୭ (ଗ) ଓଡ଼ିଶା ବିଜୟ (ଇତିହାସ) ୧୮୭୭ (ଘ) ସତୀ (ନାଟକ) ୧୮୮୭, (ଙ) ପ୍ରୀତି (ନାଟକ) ଅପ୍ରକାଶିତ । (ଚ) ବୃଦ୍ଧବିବାହ (ନାଟକ) ପ୍ରକାଶିତ ।

'ବାବାଜୀ' ନାଟକରେ ଲାଲ ମହାଶୟ ଜଣେ ଧର୍ମପ୍ରାଣ ବାବାଜୀ ମାଧ୍ୟମରେ ସେ ସମୟରେ ଶିକ୍ଷିତ ଓ ଧନାଢ୍ୟ ପରିବାରରେ ଘୃଣିବା ନିଶାପାନ, ବେଶ୍ୟାପ୍ରୀତି, ଧର୍ମଧ୍ୱଜୀ ମଠାଧିକାରୀମାନଙ୍କର ସ୍ୱୈରନୈତିକ ସ୍ଖଳନ ଓ ଅଧାର୍ମିକ କାର୍ଯ୍ୟ,

ବୁଣିଗାରେଡ଼ି ପ୍ରଭୃତି ଅନ୍ଧବିଶ୍ୱାସ ଓ କୁସଂସ୍କାର ପ୍ରଭୃତି ସମ୍ପର୍କରେ ଖୋଲା ଆଲୋଚନା କରିଛନ୍ତି ।

ସତୀ ନାଟକରେ ଗଡ଼ଜାତି ରାଜାମାନଙ୍କର ଅନ୍ଧାର ଶାସନରେ ସେକାଳର ପ୍ରଜାକୁଳ କେଉଁଭଳି ହନ୍ତସନ୍ତ ହେଉଥିଲେ, ଲାବଣ୍ୟ ଓ ସାଧୁ ଚମ୍ପତିରାୟଙ୍କ ମାଧ୍ୟମରେ ତାହା ଦେଖାଇ ଦିଆଯାଇଛି । ଲାଞ୍ଚ, ମିଛ, ଭଣ୍ଡାମି ସାଙ୍ଗକୁ ନୈତିକ ସ୍ଖଳନ ଥିଲା ଏକ ଅତି ସାଧାରଣ ବ୍ୟାପାର । ଅନ୍ତଃପୁର ଥିଲା ବ୍ୟଭିଚାରରେ ପରିପୂର୍ଣ୍ଣ ଏକ ନର୍କକୁଣ୍ଡ । ଚକ୍ରାନ୍ତ ଥିଲା ଶାସନର ଏକ ଅପରିହାର୍ଯ୍ୟ ଅଙ୍ଗ । ମୂର୍ଖ ରାଜାମାନେ ସୁଖ ବୋଇଲେ କେବଳ ଯୌନସୁଖକୁ ହିଁ ବୁଝୁଥିଲେ । ତାଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ କେତେକ ଧୂର୍ତ୍ତ ନିଜର ସ୍ୱାର୍ଥ ହାସଲ କରିବାରେ ଲାଗିଥିଲେ । 'ସତୀ' ନାଟକରେ ଲାଲ ମହାଶୟ ଅତି ନିର୍ଭୀକ ଭାବରେ ରାଜ-ଶାସନର ଅନ୍ଧକାର ଦିଗ ଉପରେ ଆଲୋକପାତ କରିଛନ୍ତି । ତତ୍ତ୍ୱ ଦୃଷ୍ଟିରୁ 'ସତୀ' (୫୮୬) ନାଟକ 'ବାବାଜୀ' ନାଟକ ଅପେକ୍ଷା ଅଧିକ ଉନ୍ନତ । ଏଥିରେ ତାତ୍ତ୍ୱିକ ଦୋଷତ୍ରୁଟିର ପରିମାଣ ଅତି ସାମାନ୍ୟ । ଆଜିଠାରୁ ଶତାଧିକ ବର୍ଷ ପୂର୍ବେ ଲାଲ ମହାଶୟ ଓଡ଼ିଆ ସାମାଜିକ ନାଟକ ପାଇଁ ଯେଉଁ ପଥ ଏହି ନାଟକ ରଚନା କରି ପ୍ରସ୍ତୁତ କରିଥିଲେ, ତାହା ଏବେ ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

'ପ୍ରୀତି' ଏବଂ 'ବୃଦ୍ଧ ବିବାହ' ନାମରେ ଆଉ ଦୁଇ ଖଣ୍ଡି ନାଟକ ମଧ୍ୟ ଲାଲ ମହାଶୟ ରଚନା କରିଥିଲେ । 'ପ୍ରୀତି' ହେଉଛି ଏକ ମିଳନାନ୍ତ ନାଟକ ଯେଉଁଥିରେ ଦୁଇ ପ୍ରଣୟୀ ଜେନାମଣି ଏବଂ ସୁମତିର ମିଳନ ଦେଖାଇ ଦିଆଯାଇଛି । ଜାତିପ୍ରଥାର ଅସାରତା ପ୍ରତିପାଦନ ହେଉଛି, ଏହାର ମୂଳ ଲକ୍ଷ୍ୟ । ସେହିଭଳି 'ବୃଦ୍ଧବିବାହ' ନାଟକରେ ବୃଦ୍ଧ ସହ ତରୁଣୀର ଅସମ-ବିବାହ ଏବଂ ତଜ୍ଜନିତ ସୃଷ୍ଟ ସାମାଜିକ ସମସ୍ୟା ଉପରେ ଆଲୋକପାତ କରାଯାଇଛି ।

'ଭ୍ରମଭଞ୍ଜନ' ଏକ ଇଂରେଜୀ କାବ୍ୟର ଛାୟାନୁହରଣରେ ରଚିତ ବୋଲି ପୂର୍ବରୁ ସୂଚିତ ହୋଇଛି । ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ କଥାବସ୍ତୁର ଅନୁପ୍ରବେଶ ଘଟାଇ ଆଧୁନିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରାଇବାର ଉଦ୍ୟମରୁ ଏହାର ସୃଷ୍ଟି । ରାଧାନାଥ ଏହାର ଦୀର୍ଘ ଅଠର ବର୍ଷ ପରେ କେଦାରଗୌରୀ (୧୮୭) କାବ୍ୟ ରଚନା କରିଥିବାରୁ ଏ ଦିଗରେ ଜଗନ୍ମୋହନଙ୍କୁ ପଥିକୃତ ବୋଲି କୁହାଯାଇପାରେ । ଏହା ବ୍ୟତୀତ ସେ ଐତିହାସିକ ଷ୍ଟେର୍ଲିଙ୍ଗଙ୍କ ଓଡ଼ିଶା ଇତିହାସର ଆଂଶିକ ଅନୁବାଦ କରି ତାହାକୁ 'ଓଡ଼ିଶା ବିଜୟ' (୧୮୭୬) ନାମରେ ପ୍ରକାଶ କରିଥିଲେ ।

ସ୍ମରଣ କରାଯାଇପାରେ ଯେ ଏହି ସମୟକୁ ଓଡ଼ିଶାରୁ ଓଡ଼ିଆ ଭାଷା ଲୋପକରି ନାନା ସ୍ଥାନରେ ବଙ୍ଗଳା ଭାଷାର ପ୍ରଚଳନ କରିବା ନିମନ୍ତେ ଏକ ଚକ୍ରାନ୍ତ ଆରମ୍ଭ

ହୋଇସାରଥିଲା । ଓଡ଼ିଶାରେ ଶିକ୍ଷାର ସେଭଳି ପ୍ରସାର ହୋଇନଥିବାରୁ ପ୍ରତିରୋଧର ଆଶଙ୍କା ନ କରି କୁଚକ୍ରୀ ଗୋଷ୍ଠୀ ସହଜରେ ସେମାନଙ୍କର ଲକ୍ଷ୍ୟ ହାସଲ କରିପାରିବେ ବୋଲି ନିଶ୍ଚିତ ଥିଲେ । ରାଜେନ୍ଦ୍ରଲାଲ ମିତ୍ରଙ୍କ ଭଳି ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ମଧ୍ୟ ବଙ୍ଗଭାଷାର ସପକ୍ଷରେ ଓଡ଼ିଶାର ସେ କାଳର ରାଜଧାନୀ କଟକ ସହରରେ ଭାଷଣ ଦେଇ ସଗର୍ବରେ ଫେରିଯାଇଥିଲେ । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମକ ସେକାଳର ଜଣେ ସ୍କୁଲ୍ ପଣ୍ଡିତ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେ (୧୮୭୦) ବୋଲି ଏକ ପୁସ୍ତକ ରଚନା କରି ଚହଳ ସୃଷ୍ଟି କରିଥିଲେ । ବଙ୍ଗୀୟମାନଙ୍କ ଦୃଷ୍ଟିରେ ଓଡ଼ିଶା ବେହେରା, କୁଲି, ଠାକୁର, ମାଳୀର ଦେଶ । ସେମାନଙ୍କ ସାହିତ୍ୟରେ ମଧ୍ୟ 'ଓଡ଼ିଆ'ମାନେ ସେହିଭଳି ଚିତ୍ରିତ । ସେମାନଙ୍କର କୌଣସି ସାମାଜିକ ପ୍ରତିଷ୍ଠା ଥିବାର ବଙ୍ଗୀୟମାନଙ୍କର ଦୃଷ୍ଟିରେ ପଡ଼ି ନ ଥିଲା । ତେଣୁ ସ୍ୱତନ୍ତ୍ର ଭାଷାଟାଏ କ'ଣ ହେବ ? ମାତ୍ର କାର୍ଯ୍ୟଟି ସେତେ ସହଜ ହୋଇ ନ ଥିଲା । ଓଡ଼ିଶାରେ ଯେଉଁ ମୁଷ୍ଟିମେୟ ଶିକ୍ଷିତ ଥିଲେ, ସେମାନେ ସମସ୍ୱରରେ ଏ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ ଜଣାଇଲେ । ବିଶେଷକରି ସେକାଳର ଦୁଇ ପ୍ରତିଷ୍ଠିତ ସମ୍ବାଦପତ୍ର 'ଉତ୍କଳ ଦୀପିକା' ଓ 'ସମ୍ବାଦବାହିକା' ନିୟମିତ ଭାବରେ ଜନତାର ସ୍ୱରକୁ ଉପସ୍ଥାପିତ କରିପିବାକୁ ଲାଗିଲେ । କେବଳ ଏତିକରେ ଫଳ କ'ଣ ହୋଇଥାଆନ୍ତା କୁହାଯାଇପାରିବ ନାହିଁ । ଓଡ଼ିଶାର ସୌଭାଗ୍ୟକୁ କମିଶନର ରେଭେନ୍‌ସା ଓ କଲେକ୍ଟର ବୀମ୍‌ସ ଓଡ଼ିଆମାନଙ୍କର ଦାବୀକୁ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଇଲେ । ବୀମ୍‌ସ ଥିଲେ ଯଥାର୍ଥରେ ଜଣେ ଜ୍ଞାନୀଗୁଣୀ ବ୍ୟକ୍ତି । ଯଦିଓ ସେ ତାଙ୍କ ଆତ୍ମଜୀବନୀରେ ଓଡ଼ିଆମାନଙ୍କର ଆଳସ୍ୟପରାୟଣତା, ନିରୁଦ୍ୟମତା ଓ ଦୁଷ୍ଟବୁଦ୍ଧିକୁ କଡ଼ା ସମାଲୋଚନା କରିଯାଇଛନ୍ତି, ତଥାପି ଏକ ସମୃଦ୍ଧ ପ୍ରାଚୀନ ସାହିତ୍ୟ ଥିବା ଭାଷାର ସ୍ୱାତନ୍ତ୍ର୍ୟକୁ ସେ ଅକୁଣ୍ଠ ସମର୍ଥନ ଦେବାରେ ମଧ୍ୟ ହେଳା କରି ନାହାନ୍ତି । ଆମର ଦୃଢ଼ବିଶ୍ୱାସ, ଏ ଦୁଇ ସିଭିଲିଆନ୍‌ଙ୍କର ସମର୍ଥନ ପାଇ ନ ଥିଲେ ଓଡ଼ିଆ ଭାଷାର ସ୍ଥିତି ବଜାୟ ରଖିବା ସମ୍ଭବପର ହୋଇ ନ ଥା'ନ୍ତା । ସେ କାଳରେ ବୀମ୍‌ସ ଓଡ଼ିଶାର ବୈଷ୍ଣବ ସାହିତ୍ୟ ଉପରେ 'Indian Antiquacy'ରେ ଯେଉଁ ପ୍ରବନ୍ଧମାନ ଲେଖିଥିଲେ, ଭାଷାର ସ୍ଥିତି ନିମନ୍ତେ ସେଗୁଡ଼ିକର ଅବଦାନ ମଧ୍ୟ କିଛି କମ୍ ନୁହେଁ ।

ଜଗନ୍ମୋହନ ଏହି ଆନ୍ଦୋଳନ ଗୁଲୁଥିବା ସମୟକୁ ଯୁବକ ଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା ଯେ, ଓଡ଼ିଆରେ ଆଧୁନିକ ସାହିତ୍ୟ ନ ଥିବାରୁ ହିଁ ଭାଷା ପାଇଁ ଏହି ବିପଦ ସୃଷ୍ଟି ହୋଇଛି । ସାହିତ୍ୟ ହେଉଛି ଭାଷାର ପ୍ରାଣ ସ୍ୱରୂପ । ପ୍ରେସ୍ ତ ସେତେବେଳକୁ ନୂଆ ନୂଆ ଆସିଥାଏ । ପତ୍ରପତ୍ରିକା ମଧ୍ୟ ବାହାରିବାକୁ ଆରମ୍ଭ କରିଥାଏ । ସାହିତ୍ୟ ବା ଆସନ୍ତା କୁଆଡ଼ୁ ? ଜଗନ୍ମୋହନ ଏହି ଅଭାବ ଦୂର କରିବା ନିମନ୍ତେ ଲେଖନୀ ଉଠାଇ ନେଇଥିଲେ ତାଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା,

ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତି ଦୃଢ଼ ହୋଇଥିଲେ, ଭାଷା ବିଲୋପ ରୂପକ ଅପଚେଷ୍ଟାର ସ୍ୱତଃ ନିରାକରଣ ଘଟିବ ।

**ପ୍ରନ୍ତସ୍ୱର ପୃଷ୍ଠଭୂମି**—ପ୍ରସଙ୍ଗକ୍ରମେ ଏଠାରେ ଜଗନ୍ମୋହନଙ୍କ ପୂର୍ବପୁରୁଷ ଏବଂ ସାମାଜିକ ସ୍ଥିତି ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରାଯାଉଛି । ଲାଲ ପରିବାର ଅଣଓଡ଼ିଆ ଥିଲେ ବୋଲି ସୂଚିତ ହୋଇଛି । ଏହି ପରିବାରର ପ୍ରଥମ ପୁରୁଷ ଉତ୍ତର ପ୍ରଦେଶର ବରେଲି ଅଞ୍ଚଳରୁ ଭାଗ୍ୟାନ୍ୱେଷଣରେ ଓଡ଼ିଶା ଆସିଥିଲେ ଏବଂ ଅଷ୍ଟାଦଶ ଶତକର ଦ୍ୱିତୀୟ ଦଶକରେ ଏହି ପରିବାରର ଯଥାର୍ଥ ଭାଗ୍ୟୋଦୟ ହୋଇ-ଥିଲା ରାଜନୀତିର ହଠଚମତ ଖେଳଦ୍ୱାରା ।

ଅଷ୍ଟାଦଶ ଶତକର ପ୍ରଥମ ପାଦରେ ବଙ୍ଗଳାର ସୁବେଦାର ମୁର୍ଶିଦ୍‌କୁଲି ଖାଁଙ୍କ ଜାମାତା ସୁଜାଉଦ୍ଦିନ୍ ଓଡ଼ିଶାର ନାଜିମ୍ ନିଯୁକ୍ତ ହୁଅନ୍ତି । ଇତିମଧ୍ୟରେ ଆଓରଙ୍ଗ୍‌-ଜେବ୍‌ଙ୍କ ମୃତ୍ୟୁପରେ ସମଗ୍ର ଦେଶରେ କୌଣସି ଦୃଢ଼ କେନ୍ଦ୍ରୀୟ ଶାସନ ନଥିଲା । ପ୍ରାଦେଶିକ ଶାସନକର୍ତ୍ତାବୃନ୍ଦ ନାମକୁ ମାତ୍ର ଦିଲ୍ଲୀର ଆନୁଗତ୍ୟ ସ୍ୱୀକାର କରି ଗୋପନରେ ନିଜନିଜର ଶକ୍ତି ବଢ଼ାଇ ଚାଲିଥିଲେ । ଓଡ଼ିଶା ଏବଂ ବଙ୍ଗଳାରେ ପ୍ରାୟ ଗୋଟିଏ ପରିବାରର ଶାସନ ଚାଲିଥିଲା କହିଲେ ଚଳେ । ଉଭୟ ଶାସକଙ୍କର ମିଳିତ ଶକ୍ତି ମୋଗଲଶାସନ ପାଇଁ କେଉଁ ଭୂମିକା ଗ୍ରହଣ କରିଥାଆନ୍ତା କହିହେବ ନାହିଁ । ମାତ୍ର ଦୁର୍ଭାଗ୍ୟକୁ ଉଭୟ ଶାସକଙ୍କ ମଧ୍ୟରେ ଘୋର ମନୋମାଳିନ୍ୟ ଦେଖାଦେଲା । ସୁଜାଉଦ୍ଦିନ୍ ନିଜ ପତ୍ନୀ ମୁର୍ଶିଦ୍‌କୁଲି ଖାଁଙ୍କ କନ୍ୟାକୁ ଛାଡ଼ପତ୍ର ଦେଲେ । ମୁର୍ଶିଦ୍‌କୁଲି ଖାଁ ସୁଜାଉଦ୍ଦିନ୍‌ଙ୍କ ପୁତ୍ର ସରଫରାଜ ଖାଁକୁ ଓଡ଼ିଶାର ନାଜିମ୍‌ରୂପେ ନିଯୁକ୍ତ ଦେଇ ପିତା ପୁତ୍ରଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାର ଉଦ୍ୟମ କରନ୍ତି । ତାଙ୍କର ସେ ଉଦ୍ୟମ କିନ୍ତୁ ଫଳବତୀ ହୁଏନାହିଁ । ସୁଜାଉଦ୍ଦିନ୍‌ଙ୍କର ସେଇ ଦୁର୍ଦ୍ଦିନରେ ଯେଉଁ ଚାରିଜଣ ବ୍ୟକ୍ତି ଦୃଢ଼ଭାବରେ ତାଙ୍କ ନିକଟରେ ଠିଆ ହୋଇଥିଲେ, ସେମାନଙ୍କ ମଧ୍ୟରେ ଲାଲବଂଶର ପ୍ରଥମ ପୁରୁଷ ଫତେଚାନ୍ଦ ଥିଲେ ଅନ୍ୟତମ । ଫତେଚାନ୍ଦ ବ୍ୟବସାୟୀ ଥିଲେ ଏବଂ ପ୍ରତିଷ୍ଠା ପାଇଁ ରାଜନୀତିର ଜୁଆଖେଳରେ ନିଜକୁ ସାମିଲ୍ କରି ଦେଇଥିଲେ । ଫତେଚାନ୍ଦଙ୍କର ଦୂରଦୃଷ୍ଟି ଥିଲା । କାରଣ ଅନ୍ତରେ ସୁଜାଉଦ୍ଦିନ ନିଜର ପୁତ୍ର ସରଫରାଜକୁ ପ୍ରାଣଦଣ୍ଡ ଦିଆଇ ରକ୍ଷିତାପୁତ୍ର ତକିଖାଁକୁ ଓଡ଼ିଶାର ନାଏବ-ନଜାମ୍‌ରୂପେ ନିଯୁକ୍ତ କରାଇ ଦେଇଥିଲେ । ଫତେଚାନ୍ଦଙ୍କ ଅଣନାତି ଅରୂପରାମ ତକିଖାଁଙ୍କର ଅତି ବିଶ୍ୱସ୍ତ ହୋଇପାରିଥିଲେ ଏବଂ ତକିଖାଁଙ୍କ ଦ୍ୱାରା 'ଲାଲ' ଉପାଧିରେ ମଧ୍ୟ ଭୂଷିତ ହୋଇଥିଲେ । ଅଷ୍ଟାଦଶ ଶତକର ଚତୁର୍ଥ ଦଶକ ବେଳକୁ ଲାଲ-ପରିବାର ମାହାଙ୍ଗାରେ ସ୍ଥାୟୀ ଭାବରେ ବସବାସ କରିବାକୁ ଆରମ୍ଭ କରିଥିଲେ । ଏହି ବଂଶର କୁଳଦେବତା ରାଧାକାନ୍ତ ଅରୂପରାମଙ୍କ ଦ୍ୱାରା ଏହି ସମୟରେ ପ୍ରତିଷ୍ଠିତ ହୋଇଥିବାର ଜଣାଯାଏ । ଜଗନ୍ମୋହନ ହେଉଛନ୍ତି ଏହି ବଂଶର ନବମ ପୁରୁଷ ।

ଏକ ଅଶାନ୍ତ ରାଜନୈତିକ ବାତାବରଣରେ ଲାଲ ମହାଶୟଙ୍କର ଜନ୍ମ । ଇଂରେଜମାନଙ୍କ ରାଜତ୍ୱ ବିରୁଦ୍ଧରେ ମଝିରେ ମଝିରେ ବିଦ୍ରୋହମାନ ମୁଣ୍ଡ ଟେକି ଉଠୁଥିଲା । ଶାସକ ସମ୍ପ୍ରଦାୟର ସମସ୍ତ ଶକ୍ତି ଏହାକୁ ଦମନ କରିବାରେ ବ୍ୟସ୍ତ ହେଉଥିଲା । ଦେଶର ଉନ୍ନତି ପାଇଁ କିଛି କରିବା ନିମନ୍ତେ ଇଂରେଜମାନେ ହୁଏତ ସମୟ ପାଉ ନଥିଲେ, କିମ୍ବା ଓଡ଼ିଆ ଜାତିର ନୈତିକ ମାନଦଣ୍ଡକୁ ଦୁର୍ବଳ କରିଦେବା ନିମନ୍ତେ ଏହା ଥିଲା ସେମାନଙ୍କର ଇଚ୍ଛାକୃତ ଅବହେଳା ।

ତେବେ ଲାଲ ପରିବାର ଥିଲେ ରାଜଭକ୍ତ ଶାସନର ମଙ୍ଗଳ ଦୃଷ୍ଟି ରହିଥିବାରୁ ଏମାନଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ି ନଥିବାର ଜଣାଯାଏ । ଓଡ଼ିଆକୁ ଏମାନେ ନିଜର ମାତୃଭାଷା ରୂପରେ ଗ୍ରହଣ କରିନେଇଥିଲେ । ଜଗନ୍ମୋହନଙ୍କ ପ୍ରାଥମିକ ଶିକ୍ଷା କେଉଁ ପାରମ୍ପରିକ ଢଙ୍ଗରେ ଗ୍ରାମ ଚାଟଶାଳୀରେ ହିଁ ସମାପ୍ତ ହୋଇଥିଲା । ଏହାପରେ ଇଂରେଜୀ ଶିକ୍ଷାନିମନ୍ତେ ତାଙ୍କୁ କଟକ ପଠାଇ ଦିଆଯାଇଥିଲା । ରେଭେନ୍ସାକଲେଜିଏଟର ଯଥାସମୟରେ ସେକାଳର ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ତାଙ୍କୁ ସରକାରୀ ଚାକିରୀରେ ପ୍ରବେଶ କରିବାକୁ ହୋଇଥିଲା, କିଛିଦିନ ସିରସ୍ତାଦାରୀ କରିବାପରେ ଅବସର ନେବାବେଳକୁ ସେ ଜଣେ ଡେପୁଟି କଲେକ୍ଟର ହୋଇପାରିଥିବାର କୁହାଯାଉଛି ।

ଜଗନ୍ମୋହନ ଚିନ୍ତା ଓ ଚେତନାରେ ଜଣେ ଉଦାରପନ୍ଥୀ ଥିଲେ । ସମାଜପାଇଁ କିଛି କରିବାର ସ୍ପୃହା ତାଙ୍କର ତରୁଣ ଅବସ୍ଥାରୁ ରହିଥିଲା । ଅବସର ଗ୍ରହଣ ପରେ ସେ କିଛିଦିନ ଜିଲ୍ଲାବୋର୍ଡର ସଭ୍ୟଥିଲେ ଏବଂ କଟକ ଟ୍ରେଣିଂ କମିଟି ସହିତ ମଧ୍ୟ ଦୀର୍ଘକାଳ ସମ୍ପୃକ୍ତ ଥିଲେ । ସକଳ ପ୍ରକାରର କୁସଂସ୍କାର ଏବଂ ଅନ୍ଧବିଶ୍ୱାସର ସେ ଥିଲେ ଘୋର ବିରୋଧୀ । ବିଧବା କନ୍ୟାର ପୁନର୍ବିବାହ ଦେଇ ସେ ସେକାଳରେ ଯେଉଁ ଦୃଷ୍ଟାନ୍ତ ସୃଷ୍ଟି କରିଥିଲେ, ତାହା ପୂର୍ବରୁ ସୂଚିତ ହୋଇଛି । ତାଙ୍କର ସ୍ମୃତିପ୍ରତି ଶ୍ରଦ୍ଧା ଜଣାଇ 'ଉତ୍କଳ ସାହିତ୍ୟ' ଲେଖିଥିଲେ, "ବାକ୍ୟ ଓ କାର୍ଯ୍ୟକୁ ସେ ଜୀବନରେ ଏକ କରିଥିଲେ । ସତ୍ୟପଥ ଓ ନ୍ୟାୟ ପଥକୁ ଅନୁସରଣ କରିବାକୁ ଯାଇ କାହାର ମୁଖାପେକ୍ଷା କରି ନଥିଲେ । ଏହା ସାମାନ୍ୟ ସାହସିକତା ନୁହେଁ । ସେହିହେତୁ ପଲ୍ଲୀଗ୍ରାମରେ ଥାଇ ସକଳ ପ୍ରତିଦ୍ୱନ୍ଦ୍ୱୀ ସମ୍ମୁଖରେ ସ୍ୱୀୟ ବିଧବା କନ୍ୟା ଲବଣ୍ୟକୁ ପୁନର୍ବିବାହ ଦେବାକୁ କୁଣ୍ଠାବୋଧ କରି ନଥିଲେ । × × × ସାହିତ୍ୟ କ୍ଷେତ୍ରରେ ତାଙ୍କର କୃତିତ୍ୱ ନିତାନ୍ତ ସାମାନ୍ୟ ନୁହେଁ ।" ( ଉ ସା ୨୨/୧୦ ମାଘ ୧୩ ୦)

ସାହିତ୍ୟ ଥିଲା ଲାଲଙ୍କ ସମାଜସେବାର ଏକ ମାଧ୍ୟମ । କାବ୍ୟରଚନା କରି ସେ ପ୍ରଥମେ ଏ କ୍ଷେତ୍ରରେ ପ୍ରବେଶ କରିଥିଲେ । 'ଭ୍ରମଭଞ୍ଜନ' ସେ ସମୟରେ ଛପା ପ୍ରଶଂସିତ ହୋଇ ନଥିଲେହେଁ ଉଦାର ଭାବରେ ପ୍ରଚାରିତ ହୋଇଥିଲେହେଁ ଲାଲଜୀ ଆଉ

କାବ୍ୟ ରଚନାରେ ମନ ଦେଇ ନଥିଲେ । ଜନର ଶକ୍ତି ସମ୍ପର୍କରେ ଅବହିତ ହେବା ପରେ ସେ ନାଟକରଚନା ଆଡ଼କୁ ଆକୃଷ୍ଟ ହୋଇଥିଲେ ଏବଂ ଶେଷପର୍ଯ୍ୟନ୍ତ ସେହି କ୍ଷେତ୍ରରେ ହିଁ ବନ୍ଧାଯାଇଥିଲେ । ନାଟ୍ୟକାର ରୂପେ ହିଁ ଓଡ଼ିଶାରେ ତାଙ୍କର ପରିଚୟ ।

ଏକମୁଖୀ ମଞ୍ଚାଭିନୟ ଯହ ତାଙ୍କର ନାଟକରେ କମ୍ବା କଲିକତାରେ ପରିଚୟ ଦେଲା, ସେ କଥା ଜଣାଯାଏ ନାହିଁ । ତେବେ ୧୮୭୫ ମସିହାରେ ସେ ନିଜ ଗ୍ରାମ ମାହାଙ୍ଗାରେ କୁଳଦେବତା ରାଧାକାନ୍ତ ଜୀଉଙ୍କ ନାମାନୁସାରେ 'ରାଧାକାନ୍ତ ମଞ୍ଚ' ସ୍ଥାପନକରି ତହିଁରେ ନିୟମିତ ଭାବରେ ବଙ୍ଗଳା ନାଟକର ଅଭିନୟ କରାଉଥିଲେ । ଏହାକୁ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ କୁହାଯାଇପାରେ ।

ଖଣ୍ଡିଏ କାବ୍ୟ, ଖଣ୍ଡିଏ ଇତିହାସ ଓ ଗୃଣଖଣ୍ଡି ନାଟକ ରଚନା କରିଥିଲେହେଁ ଜଗନ୍ମୋହନ ନିଜ ପାଇଁ ସାହିତ୍ୟ କ୍ଷେତ୍ରରେ ସେଭଳି କୌଣସି ଉଲ୍ଲେଖଯୋଗ୍ୟ ସ୍ଥାନ ସଂଗ୍ରହ କରିପାରି ନାହାନ୍ତି । ଅନ୍ତତଃ ନାଟକରଚନା କ୍ଷେତ୍ରରେ ତାଙ୍କର କୃତିତ୍ୱକୁ ଯଥାଯୋଗ୍ୟ ମାନ୍ୟତା ଦିଆଯାଇଥିବାର ଦେଖିବାକୁ ମିଳୁନାହିଁ । ତାଙ୍କ ବର୍ତ୍ତମାନରେ ରାମଶଙ୍କରଙ୍କୁ 'ଓଡ଼ିଆ ନାଟକର ପିତା' ରୂପରେ ସମ୍ମାନିତ କରାଯିବା ମଧ୍ୟ ତାଙ୍କପ୍ରତି ଘୋର ଅନ୍ୟାୟ ବୋଲି ଆମର ବିନମ୍ର ମତ । ଜଗନ୍ମୋହନ ନୀରବ-ସାଧନାରେ ବିଶ୍ୱାସୀ ଥିଲେ । ପ୍ରଚାର ପ୍ରତି ତାଙ୍କର ତିଳେହେଲେ ଦୃଷ୍ଟି ନଥିଲା । ସେକାଳରେ ତାଙ୍କୁ ପତ୍ରପତ୍ରିକାରେ ସାମାନ୍ୟ ସ୍ଥାନ ଦିଆଯାଇଥିଲା । ଏ କାଳରେ ମଧ୍ୟ ପ୍ରିୟରଞ୍ଜନ ସେନ, ଖିରୋଦାଶଙ୍କର ରାୟ, ଜାନକୀବଲ୍ଲଭ ମହାନ୍ତି ପ୍ରମୁଖ ଏହାଙ୍କର ଯଥାର୍ଥ ମୂଲ୍ୟାୟନ ସମ୍ପର୍କରେ ଉଦାସୀନ ରହିଲେ । ଫଳରେ ଜଗନ୍ମୋହନ ଅଚିରେ ବିସ୍ମୃତିର ଢେଉକୁ ଚାଲିଗଲେ ।

ବିଶ୍ୱାସରେ ଜଗନ୍ମୋହନ ଥିଲେ ପରମେଶ୍ୱରର ଭକ୍ତ । ତେବେ ତାଙ୍କର ଦୃଷ୍ଟିକୋଣ ଥିଲା ପ୍ରଗତିବାଦୀ । ପ୍ରାଚୀନ ଗ୍ରନ୍ଥ, ରାଗ ରାଗିଣୀର ପ୍ରୟୋଗ ତାଙ୍କର ପ୍ରାୟ ସମସ୍ତ କାବ୍ୟ ନାଟକରେ ଦେଖିବାକୁ ମିଳେ । ତେବେ ଭାଷା ପରିକଳ୍ପନା କ୍ଷେତ୍ରରେ ଜଗନ୍ମୋହନଙ୍କର ଅସଫଳତା ହିଁ ତାଙ୍କର ରଚନାକୁ ଯଥାର୍ଥ ଶିଳ୍ପୋଚିତ ସୌନ୍ଦର୍ଯ୍ୟରେ ରସାଣିତ କରିପାରି ନଥିଲା । କାବ୍ୟ ନାଟକାଦିରେ ଯେଉଁ ସଙ୍ଗୀତସବୁ ବ୍ୟବହୃତ କରାଯାଇଛି, ତହିଁରେ ଉକ୍ତିର ସ୍ୱଚ୍ଛନ୍ଦ ଶାବଳୀଳତାର ଅଭାବ ପୂର୍ବୋକ୍ତ ମତରେ ପୃଷ୍ଠପୋଷକତା ହିଁ କରୁଛି । ତଥାପି ନିଜ ନାଟକରେ କଥାବସ୍ତୁ, ଘଟଣା ଓ ଚରିତ୍ର ମାଧ୍ୟମରେ ଘନସନ୍ନିବଦ୍ଧ ବୃତ୍ତ ପରିକଳ୍ପନାରେ ତାଙ୍କର କୃତିତ୍ୱକୁ ଲକ୍ଷ୍ୟ କଲେ ଏବଂ ବିଶେଷଭାବରେ ଏହାର ଅନ୍ତର୍ନିହିତ ପ୍ରଗତିବାଦୀ ଚିନ୍ତାଧାରାକୁ ଲକ୍ଷ୍ୟ କଲେ, ଏସବୁକୁ ଯଥାର୍ଥ ଶିଳ୍ପସୌନ୍ଦର୍ଯ୍ୟ ଭିନ୍ନ ବୋଲି କହିବାର କୌଣସି କାରଣ ନାହିଁ । ପାତ୍ରୋଚିତ ଭାଷା ପରିକଳ୍ପନା ନିମନ୍ତେ ତାଙ୍କର ଉଦ୍ୟମର ପରିଚୟ ପ୍ରାୟ ପ୍ରତ୍ୟେକ

ନାଟକରୁ ମିଳିବ । ଦୋଷ ହେଉଛି ଯେ, ଏ ସବୁକୁ ସେ ସ୍ଥିରତା ଦେଇପାରି ନାହାନ୍ତି । ତେବେ ବିଷୟ ପରିକଳ୍ପନାରେ ସେ ଯେଉଁ ଦୂରଦୃଷ୍ଟି ଓ ଦୁଃସାହସିକତାର ପରିଚୟ ଦେଇଛନ୍ତି, ତାଙ୍କର କେତେଜଣ ସମସାମୟିକ ନାଟ୍ୟକାରଙ୍କଠାରେ ତାହା ଥିଲା ? ସ୍ମରଣ କରାଯାଇ ପାରେ ଯେ, ଭାରତୀୟ ନାଟ୍ୟସାହିତ୍ୟରେ ଯୁଗଟି ଥିଲା, ମୁଖ୍ୟତଃ ଐତିହାସିକ ଓ ପୌରାଣିକ ନାଟକର ଯୁଗ । ଜଗନ୍ମୋହନ ଆରମ୍ଭ କଲେ ସାମାଜିକ ନାଟକର; ଏବଂ ଓଡ଼ିଆ ନାଟକ ଏ ଦିଗରୁ ଯେ ତା'ର ପଡ଼ୋଶୀ ପ୍ରଦେଶର ସୃଷ୍ଟି ଅପେକ୍ଷା ଅନ୍ତତଃ ଅର୍ଦ୍ଧଶତକ ଆଗେଇ ରହିଲା ଏହା ନ କହିଲେ ମଧ୍ୟ ଚଳିବ । ଏଇ ଗୁରୁତ୍ୱପୂର୍ଣ୍ଣ ବ୍ୟାପାରଟିକୁ ସେତେବେଳେ ଏଡ଼ାଇ ଦିଆଯାଇଥିଲା ।

ଲାଲା ଥିଲେ ନବଜାଗରଣର ଯଥାର୍ଥ ବାର୍ତ୍ତାବହ । ପ୍ରାଚୀନ ତଥା ନବୀନର ସଂଘର୍ଷ, ଗୋଟିଏ ଦିଗରେ ଅସ୍ତଗାମୀ ମଧ୍ୟଯୁଗୀୟ ଚେତନା ତଥା ଅନ୍ୟ ଦିଗରେ ଆତ୍ମପ୍ରକାଶକାମୀ ନବ-ଚେତନାର ଅରୁଣୋଦୟ ଏହାର ଅନ୍ତର୍ବର୍ତ୍ତୀ କାଳରେ ଜଗନ୍ମୋହନଙ୍କର ଜନ୍ମ । ସମାଜର ସେଇ ପରିବର୍ତ୍ତନ, ଭାବ ସହିତ ଭାବର ସଂଘର୍ଷ, ନୂତନ ସହିତ ପୁରାତନର ସଂଘାତ ଜଗନ୍ମୋହନଙ୍କ ରଚନାରେ ଛବିଭଳି ସ୍ପଷ୍ଟ । ତାତ୍ପର୍ଯ୍ୟ କେବଳ ଏତିକି ଯେ, ଛବିମୂଳ-ନାଟକଗୁଡ଼ିକ ବାଙ୍ମୟ । ଊନବିଂଶ ଶତକର ଇତିହାସ ଜାଣିବାକୁ ହେଲେ ସେ କାଳର ଯଥାର୍ଥ ସାମାଜିକ ସ୍ୱରୂପ ଅନୁଭବ କରିବାକୁ ହେଲେ ଏସବୁ ରଚନାର ଆଶ୍ରୟ ନେବାକୁ ହିଁ ପଡ଼ିବ ।

ଆଲୋଚକମାନେ ମନେକରନ୍ତି ଯେ, କୌଣସି ବିଶେଷ ଧରଣର ସାମାଜିକ ଚେତନାର ପ୍ରବଳ ଆକର୍ଷଣ ନଥିଲେ, ନାଟକ ସୃଷ୍ଟି ସ୍ମରଣୀୟ ହୁଏନାହିଁ । ନବଜାଗରଣର ପ୍ରସାର ହୋଇଛି ଊନବିଂଶ ଶତକର ଉଲ୍ଲେଖଯୋଗ୍ୟ ଘଟଣା । ଏହା ସହିତ ପାରମ୍ପରିକ ସମାଜ ଚେତନାର ଯେଉଁ ତୀବ୍ର ସଂଘର୍ଷ ତାହାହିଁ ହୋଇଛି ସେକାଳର ସାହିତ୍ୟିକମାନଙ୍କ ପାଇଁ ମୁଖ୍ୟ ଉପାଦାନ । ସାମାଜିକ କୁସଂସ୍କାର ଅନ୍ଧବିଶ୍ୱାସର ବିଲୋପ ସାଧନ, ଶ୍ରେଣୀ ବୈଷମ୍ୟର ବିନାଶ ଘଟାଇ ମୈତ୍ରୀମୟ ଏକ ସମାଜ ଗଠନର ସ୍ୱପ୍ନ ସେ କାଳର ପ୍ରାୟ ପ୍ରତ୍ୟେକ ସାହିତ୍ୟ ଦେଖିଛନ୍ତି । ଲାଲ-ମହାଶୟ ଯେ ଏହାର ବ୍ୟତିକ୍ରମ ନଥିଲେ, ଏହା ତାଙ୍କର ନାଟକଗୁଡ଼ିକୁ ଅନୁଧ୍ୟାନ କଲେ ଜଣାପଡ଼ିବ ।

ଲାଲ-ପରିବାର ଏଠାକାର ବୁଦ୍ଧିଜୀବୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ । ସାମାଜିକ ପ୍ରତିଷ୍ଠା ଥିଲା, ଶିକ୍ଷାଦୀକ୍ଷା ଥିଲା ଏବଂ ସର୍ବୋପରି ଥିଲା ବଣ୍ଠକୌଳିନ୍ୟ । ତେଣୁ ଏହି ପରି-ବାର ସମାଜକୁ ନେତୃତ୍ୱ ଦେବାର ଗୁରୁଦାୟିତ୍ୱ ତୁଲାଇ ଆସୁଥିଲେ । ଜଗନ୍ମୋହନ ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିବାରୁ ନିଜ ସମାଜର ଦୋଷତ୍ରୁଟିଗୁଡ଼ିକୁ ସହଜରେ ଚିହ୍ନିତ କରିପାରୁଥିଲେ । ସାର୍ବିକ ସଂସ୍କାର ତେଣୁ ଥିଲା ତାଙ୍କର ସ୍ୱପ୍ନ । ଲେଖନୀ ଚାଳନା ମଧ୍ୟ ସେ କରୁଥିଲେ ଏଇ ଲକ୍ଷ୍ୟ ନେଇ । ବ୍ୟକ୍ତିଗତ ସଙ୍କଟ ଅପେକ୍ଷା ସମାଜ ଜୀବନର

ସାମଗ୍ରିକ ସଙ୍କଟ ଚିତ୍ରଣ କରି ସେ ସଚେତନତା ସୃଷ୍ଟି ନିମନ୍ତେ ଉଦ୍ୟମ କରିଥିଲେ । ଏଥିପାଇଁ ବ୍ୟଙ୍ଗ ଥିଲେ ଏକ ମାଧ୍ୟମ ମାତ୍ର । ସାମାଜିକ ଅନ୍ତଃସ୍ୱର ଓ ଉଚ୍ଛୃଙ୍ଖଳତାର ମୁଖା ଖୋଲିଦେଇ ତା'ର ବିଲୋପ ଘଟାଇବା ଥିଲା ତାଙ୍କର ଲକ୍ଷ୍ୟ । ଆଲୋଚକ ସୁକୁମାର ସେନ୍ ବଙ୍ଗଳା ନାଟକର ଆଦ୍ୟପର୍ଯ୍ୟାୟ ସମ୍ପର୍କରେ ସୂଚନା ଦେବାକୁ ଯାଇ ଲେଖିଛନ୍ତି, "ଇଂରେଜୀ ଶିକ୍ଷାର ପ୍ରଥମ ସର୍ବସ୍ୱ ଫଳ ସମାଜ ସଂସ୍କାର ମଧ୍ୟରେ ଆତ୍ମପ୍ରକାଶ କରିଥିଲା । ପୂର୍ବରୁ ଯାତ୍ରା, ପାଞ୍ଚାଳୀ, କବିତାରେ ଓ ନକ୍‌ସାରେ ସମାଜ ବା ଶ୍ରେଣୀ ବିଶେଷର ବ୍ୟଙ୍ଗ ଚିତ୍ର ଜନସାଧାରଣଙ୍କ ଚିତ୍ତ ବିନୋଦନର ଗୋଟିଏ ପ୍ରଧାନ ଉପକରଣ ଯୋଗାଇ ଆସୁଥିଲା । ସାଧୁ ଶ୍ରେଣୀ ପାଷାଣ୍ଡର ଭଣ୍ଡାମି, ମୂର୍ଖର ଧନଗର୍ବ, ଓ କୁଳାଭିମାନ, ପଣ୍ଡିତର ବିଦ୍ୟାମନ, ମାତାଲର ଲାଞ୍ଛନା, ଧନୀର ଲମ୍ପଟ୍ୟ, କୁଚ୍ଛିମାର ଛଳନା, ଅସତୀର ବିଡ଼ମ୍ବନା ଏବଂ ସଧବାର ଦୁର୍ଦ୍ଦଶା ଏହାହିଁ ଥିଲା ସାଧାରଣ ଯାତ୍ରା, ଗୀତ୍, ନକ୍‌ସାଚିତ୍ରର ପ୍ରଧାନ ବିଷୟ । ବଙ୍ଗଳା ନାଟକର ଆବିର୍ଭାବ ସମୟରେ କେହି କେହି ମନେ କରିଥିଲେ, ନାଟକରେ ଏଇଭଳି ଦୁଷ୍ପରିଣାମ ସମାଜ ଚିତ୍ର ଦେଖାଇ ପାରିଲେ ସାଧାରଣ ଜନତାର ଆଖି ସହଜରେ ଫିଟିଯିବ ।" ବଙ୍ଗଳା ନାଟକ ସମ୍ପର୍କରେ ଏଠାରେ ଯାହା କୁହାଯାଉଛି, ଓଡ଼ିଆ ନାଟକର ପ୍ରଥମ ପର୍ଯ୍ୟାୟ ସମ୍ପର୍କରେ ତାହା ଅକ୍ଷରଶଃ ସତ୍ୟ । କାରଣ ଏ ଦେଶର ବୁଦ୍ଧିଜୀବୀ ଗୋଷ୍ଠୀ ବଙ୍ଗଳା ସାହିତ୍ୟକୁ ହିଁ ଆଦର୍ଶରୂପେ ଗ୍ରହଣ କରି ନେଇଥିଲେ । ଲାଲାଙ୍କ ନାଟକରେ ଲକ୍ଷ୍ୟ, ପୂର୍ବୋକ୍ତ ମନ୍ତବ୍ୟର ବ୍ୟତିକ୍ରମ ନୁହେଁ ।

ଜଗନ୍ମୋହନ ଓଡ଼ିଆମାନଙ୍କର ପ୍ରାଣସତ୍ତା ସହିତ ନିବିଡ଼ ଭାବରେ ଜଡ଼ିତ ଥିଲେ । ଓଡ଼ିଆର ସହଜ ଧର୍ମ ବିଶ୍ୱାସ ଓ ଅଧ୍ୟାତ୍ମବୋଧକୁ ସେ ଅନ୍ତରର ସହ ଗ୍ରହଣ କରି ନେଇଥିଲେ । ପରିବର୍ତ୍ତନ ପାଇଁ ତାଙ୍କର ଆଗ୍ରହ ଥିଲା ସତ୍ୟ, ତେବେ ଆଧ୍ୟାତ୍ମିକତାର ଭିତ୍ତି ଉପରେ ଠିଆହୋଇ ନୂତନକୁ ସ୍ୱାଗତ ଜଣାଇବା ହିଁ ଥିଲା ଆଦର୍ଶ । ମୁଷ୍ଟିମେୟ ଧନାଢ୍ୟ ସାମନ୍ତ ଅର୍ଥକୌଳିନ୍ୟ ହେତୁ ସମାଜପତି ହୋଇ ବସି, ଯେଉଁ ସ୍ୱେଚ୍ଛାଚାର କରି ଚାଲିଥିଲେ, ସାମାଜିକ ପରିବେଶ ତଦ୍ୱାରା ବିଷାକ୍ତ ହେବାରେ ଲାଗିଥିଲା । ମଦ୍ୟପାନ, ବେଶ୍ୟାଗମନ, ପଛରେ ଥିଲା ପୁଣି ସାମାଜିକ ସ୍ୱୀକୃତି । ବଙ୍ଗଦେଶରେ ସେତେବେଳେ ଶିବନାଥ ଶାସ୍ତ୍ରୀ, ରାଜନାରାୟଣ ବସୁ, ପ୍ୟାରୀଚାନ୍ଦ ମିତ୍ର, ପ୍ରମୁଖ ଏହା ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ଓଡ଼ିଶାରେ ଏ ଧରଣର ଉଦ୍ୟମର ସକ୍ରିୟତା ନଥିଲେ ମଧ୍ୟ ଅଭାବ ନଥିଲା । ଲାଲା-ଜୀ ବାବାଜୀ, ସତୀ, ବୃଦ୍ଧବିବାହ ତଥା ପ୍ରୀତି ପ୍ରଭୃତି ନାଟକ ମାଧ୍ୟମରେ ସାମାଜିକ କୁରୁଚି ବିରୁଦ୍ଧରେ ସ୍ୱର ଉଠାଇଥିଲେ ।

ସଂସ୍କାରର ବାର୍ତ୍ତା ସାଧାରଣ ଜନତା ନିକଟରେ ପହଞ୍ଚୁ—ଏହାହିଁ ଥିଲା ଲାଲାଙ୍କର ଲକ୍ଷ୍ୟ । ପାଠକ ଅପେକ୍ଷା ଦର୍ଶକ ଅଧିକ ଏବଂ ଦର୍ଶନର ପ୍ରତିକ୍ରିୟା ସ୍ଥାୟୀ

ତଥା ସୁଦୂରପ୍ରସାରୀ ହୋଇଥିବାରୁ ଲାଲ ମହାଶୟ କାବ୍ୟ ଗ୍ରନ୍ଥ ନାଟକ କ୍ଷେତ୍ରକୁ ଆସିଥିଲେ ଓଡ଼ିଆ ଗଦ୍ୟ ଭାଷା ସାହିତ୍ୟ ପାଇଁ ତଥାପି ପୂର୍ଣ୍ଣ ରୂପରେ ବିକଶିତ ହୋଇ ନଥିଲା । ଏହି କାରଣରୁ ଜଗନ୍ମୋହନ ଲାଲ ନାଟକ ପାଇଁ ଯେଉଁ ସଂଳାପ ପରିକଳ୍ପନା କଲେ, ସେଥିରେ ଦୁର୍ବଳତା ରହିଗଲା । ହୁଏତ ଲାଲ ପରିବାର ଅଣ ଓଡ଼ିଆ ହୋଇ-ଥିବାରୁ ମଧ୍ୟ ଏହି ଦୁର୍ବଳତା କିଛି ପରିମାଣରେ ଆସି ଯାଇଥାଇପାରେ । (ଅଶ୍ୱିନୀ କୁମାରଙ୍କ କ୍ଷେତ୍ରରେ ଏହା ହିଁ ହୋଇଛି) ତଥାପି ସଂଳାପକୁ ପାତ୍ରୋପଯୋଗୀ, ସ୍ୱଚ୍ଛନ୍ଦ ଏବଂ ସାବଲୀଳ କରିବା ପାଇଁ ଲାଲ ମହାଶୟ ଏଥିରେ ବହୁ ପ୍ରବଚନ, ଢଗ, ଢମାଳିର ବ୍ୟବହାର କରିଥିବାର ଦେଖିବାକୁ ମିଳିବ । ଗ୍ରାମ ଅଞ୍ଚଳର ବହୁ ବିଶେଷ ଶବ୍ଦ ମଧ୍ୟ ତାଙ୍କ ରଚନାରେ ବ୍ୟବହୃତ ହୋଇଥିବାର ଦେଖାଯାଉଛି । ତେବେ ସ୍ୱୀକାର କରିବାକୁ ହେଉଛି ଯେ, ସାଧୁ ଏବଂ ଗ୍ରାମ୍ୟ ଶବ୍ଦ ପ୍ରୟୋଗ ମଧ୍ୟରେ ଯେଉଁ ସମତା ଏହାକୁ ଯଥାର୍ଥ ଶିଳ୍ପୋଚିତ ମାଧୁର୍ଯ୍ୟରେ ରଞ୍ଜିତ କରିଥାଆନ୍ତା, ଏ କ୍ଷେତ୍ରରେ ତାହା ହୋଇ ପାରିନାହିଁ ।

ଆଉ ଗୋଟିଏ ପ୍ରସଙ୍ଗ ଏଠାରେ ଉଲ୍ଲେଖ କରିବା ପ୍ରୟୋଜନ ହେଉଛି । ଊନବିଂଶ ଶତକରେ ଏ ଦେଶରେ ଏକମୁଖୀ ମଞ୍ଚର ଉଦ୍‌ଭବ ପୂର୍ବରୁ ଏଠାରେ ଲୀଳା, ଯାତ୍ରା, ସୁଆଙ୍ଗ ପ୍ରଭୃତି ଲୋକନାଟକର ଜୟଯାତ୍ରା ଅବ୍ୟାହତ ଥିଲା । ମନୋରଞ୍ଜନର ଅନ୍ୟ ସାଧନର ଅଭାବ ହେତୁ ଜନସାଧାରଣ ନିରୁପାୟ ହୋଇ ଏହାକୁ ହିଁ ଦେଖୁଥିଲେ । ଲାଲ ମହାଶୟ ଯାତ୍ରା ଲୀଳାଯୁଗରୁ ଓଡ଼ିଆ ନାଟକକୁ ଏକାଥରକେ ମଞ୍ଚାଭିନୟ ଯୁଗରେ ପହଞ୍ଚାଇ ଦେଲେ । ତାଙ୍କର ପ୍ରତ୍ୟେକ ନାଟକରେ ଯାତ୍ରା ନାଟକର ଯେଉଁ ପ୍ରଭାବ ଦେଖିବାକୁ ମିଳେ, ସେ ଯୁଗର ଦର୍ଶକମାନଙ୍କର ପ୍ରତ୍ୟାଶାକୁ ଆଖିରେ ରଖି ହିଁ ତାହା କରାଯାଇଥିଲା । ରୁଚି ପରିବର୍ତ୍ତନ ଏକ ତତ୍‌କ୍ଷଣିକ ବ୍ୟାପାର ନୁହେଁ । ବାବାଜୀ ନାଟକରେ ସଂଗୀତ ନୃତ୍ୟାଦି ଯାତ୍ରା ନାଟକର ବିଶେଷ ଉପଯୁକ୍ତ ଗୁରୁତ୍ୱ ଦିଆଯାଇ ନ ଥିବାରୁ ନିଶ୍ଚିତ ଭାବରେ ସେ କାଳରେ ତାଙ୍କୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିବ । ତେଣୁ ପରବର୍ତ୍ତୀ ନାଟକରେ ସେ ଯାତ୍ରାର ପରିବେଶ ଫେରାଇ ଆଣିବାକୁ ଚେଷ୍ଟା କରିଥିଲେ ।

ଲାଲଙ୍କ ନାଟକ ସମକାଳୀନ ଓଡ଼ିଶାର ସାଧାରଣ ଜନଜୀବନରେ ଏକ ରସ ଘନ ରୂପ ଏଥିରେ ସନ୍ଦେହ ନାହିଁ । ତେବେ ସାହିତ୍ୟିକ ହିସାବରେ ଲାଲ ମହାଶୟ ସମାଲୋଚକମାନଙ୍କ ଦ୍ୱାରା ଠିକ୍ ଭାବରେ ବିଶ୍ଲେଷିତ ହୋଇଥିବାର ମଧ୍ୟ ଦେଖାଯାଉ ନାହିଁ । ଡଃ ନଟବର ସାମନ୍ତରାୟ ରାମଶଙ୍କର ରାୟଙ୍କ ରଚନାକୁ 'ସାହିତ୍ୟ ସୃଷ୍ଟି ଦିଗରୁ ଉପାଦେୟ' ବୋଲି ମନେକରି ଜଗନ୍ମୋହନଲାଲଙ୍କ ପ୍ରସଙ୍ଗକୁ ଏଡ଼ାଇ ଯାଇଛନ୍ତି । ରାମଶଙ୍କର ଦୀର୍ଘ ୩୭ ବର୍ଷ ମଧ୍ୟରେ ନାଟକ ଲେଖିଥିଲେ ଚୌଦଖଣ୍ଡି ଏବଂ ଖଣ୍ଡିଏ ପୂର୍ଣ୍ଣାଙ୍ଗ ଉପନ୍ୟାସ ବ୍ୟତୀତ, ଖଣ୍ଡିଏ କାବ୍ୟ ଓ ଅନ୍ୟ କିଛି ଅନୁବାଦ ମଧ୍ୟ କରିଥିଲେ ।

ରାମଶଙ୍କରଙ୍କର ସାଧନା ନିରବଚ୍ଛିନ୍ନ ଥିଲା । ସାହିତ୍ୟ କ୍ଷେତ୍ରରେ ତାଙ୍କର ସ୍ଥିତି ଆମୃତ୍ୟୁ ବର୍ତ୍ତମାନ ଥିଲା । ଅନ୍ୟ ପକ୍ଷରେ ଜଗନ୍ମୋହନ ସେହିଭଳି ଜଣେ ଅଳ୍ପସୀମିତ ସାହିତ୍ୟ ସେବୀ, ଯେ କାଳର ବନ୍ଧନ ସୀମାକୁ ଡେଇଁବାକୁ ଗଲେ ପଚତ୍ରିଶ ବର୍ଷର ଜୀବନ କିଛି କମ୍ ମଧ୍ୟ ନୁହେଁ । (୧୯୧୩ରେ ଲାଲାଙ୍କର ମୃତ୍ୟୁ ହୋଇଥିଲା) ତେବେ ବୟସ ଅନୁପାତରେ ତାଙ୍କର ସୃଷ୍ଟିକୁ ନିତାନ୍ତ ନଗଣ୍ୟ ବୋଲି କୁହାଯିବ ପରିମାଣ ଦୃଷ୍ଟିରୁ । ଏହା ଉପରେ ଥିବ ତାଙ୍କର ପ୍ରଚାର ବିମୁଖତା । ସେ ଯୁଗର ବୁଦ୍ଧିଜୀବୀମାନେ ମଧ୍ୟ ରାମଶଙ୍କରଙ୍କର ସାହିତ୍ୟ କୃତୀର ପ୍ରଶଂସା କରିଯାଇଛନ୍ତି । ମାତ୍ର ଜଗନ୍ମୋହନଙ୍କ କ୍ଷେତ୍ରରେ ତାହା ହୋଇପାରି ନାହିଁ । ତାଙ୍କ ଜୀବଦ୍ଦଶାରେ ସୁଦ୍ଧା ଜଣେ ସାହିତ୍ୟିକ ହିସାବରେ ସେ ସ୍ୱୀକୃତି ପାଇଥିବାର ଜଣାପଡ଼େ ନାହିଁ । ବିପୁଳ ସୃଷ୍ଟି ଯେ ସର୍ବଦା ପ୍ରତିଭାର ଦ୍ୟୋତକ ହୋଇଥାଏ । ଏଭଳି ମନେ କରିବାର କୌଣସି କାରଣ ନାହିଁ । ସର୍ଜନଶୀଳତାକୁ ଯଦି ପ୍ରତିଭାର ଏକ ବିଶେଷ ଦିଗ ବୋଲି ଧରି ନିଆଯାଏ, ତେବେ ଏହି କଷ୍ଟିରେ ଜଗନ୍ମୋହନ ଯେ ସସମ୍ମାନେ ଉତ୍ତୀର୍ଣ୍ଣ ହେବେ ଏଥିରେ ସନ୍ଦେହ ନାହିଁ । ଆଲୋଚକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଏହା ସ୍ୱୀକାର କରି ଲେଖିଛନ୍ତି, 'ସୃଷ୍ଟିଶୀଳତାର ନିକଷରେ ବିଚାର କଲେ ଜଣାଯିବ । ତାଙ୍କ ପ୍ରତିଭା ସମକାଳୀନ ଅନ୍ୟାନ୍ୟ ଲେଖକଙ୍କ ପ୍ରତିଭାଠାରୁ କୌଣସି ଗୁଣରେ ନିକୃଷ୍ଟତର ନଥିଲା, ବରଂ ବହୁ ଲେଖକଙ୍କ ପ୍ରତିଭାଠାରୁ ଊର୍ଦ୍ଧ୍ୱରେ ।

ସାମାଜିକ ବା ବହିରାଗତତା ଯେଉଁ ଯୁଗରେ ଯେତେ ବ୍ୟାପକ ହୁଏ, ସେହି ଯୁଗରେ ରଙ୍ଗମଞ୍ଚ ଏବଂ ଦର୍ଶକମାନଙ୍କର ସମ୍ବନ୍ଧ ମଧ୍ୟ ସେତିକି ପ୍ରତ୍ୟକ୍ଷ ଏବଂ ଘନିଷ୍ଠ ହୋଇଥାଏ । ଊନବିଂଶର ଦ୍ରୁତଗତି ଜନଜୀବନକୁ ଅଶାନ୍ତ ଏବଂ ଆତଙ୍କିତ କରି ଦେଇଥାଏ । ଲାଲମହାଶୟ ଯେତେବେଳେ ସାହିତ୍ୟ କ୍ଷେତ୍ରରେ ପାଦ ଦେଇଥିଲେ ସେତେବେଳେ ବିଜ୍ଞାନର ପ୍ରଗତି ଦୂରରେ ଥାଉ । ଓଡ଼ିଶାରେ ରେଳରାସ୍ତାଟିଏ ମଧ୍ୟ ନ ଥିଲା । ସାଧାରଣ ଜୀବନ ଥିଲା ଘଟଣାବିହୀନ ଓ ନିସ୍ତରଙ୍ଗ । ଜନତା ଊଣେଇଶ ଶତକର ରକ୍ଷଣଶୀଳତାର ଅନ୍ଧକାର ମଧ୍ୟରେ ନିଜକୁ ଗୋପନ କରି ଭାଗ୍ୟ ଓ ଭବିତବ୍ୟ ହାତରେ ନିଜକୁ ସମର୍ପି ଦେଇଥିଲେ । ଶାସକ ସମ୍ପ୍ରଦାୟ ମଧ୍ୟ ସାଧାରଣ ଜନତାର ଏହି ଅଜ୍ଞତାର ସୁଯୋଗ ନେଇ ଯଥେଚ୍ଛ ବ୍ୟବହାର କରି ଚାଲୁଥିଲେ । ଜୀବନ ନିୟନ୍ତ୍ରିତ ହେଉଥିଲା, ସତ୍ୟ ନୁହେଁ, ଗୁଜବ ଦ୍ୱାରା । ଶାସକର ପାଟିର କଥା ହିଁ ଥିଲା ଆଇନ । ଏହିଭଳି ପରିସ୍ଥିତିରେ ଲାଲ ନାଟକ ଲେଖିବାକୁ ଆଗେଇ ଆସିଲେ । ମଞ୍ଚ ଏବଂ ଦର୍ଶକ ମଧ୍ୟରେ ଯୋଗାଯୋଗ ପ୍ରତିଷ୍ଠା କରି ଜନସଚେତନତା ସୃଷ୍ଟି କରିବା ନିମନ୍ତେ ଉଦ୍ୟମ କଲେ । ଜନଜୀବନର ମୁଖ୍ୟ ସମସ୍ୟାଗୁଡ଼ିକୁ ସେମାନଙ୍କ ଆଗରେ ଖୋଲି ଧରିଲେ । ଭଲମନ୍ଦ ବିଚାର କରିବାକୁ ଶିଖାଇଲେ । ସମାଜର ସଂସ୍କାର ସାଧନ ଥିଲା ତାଙ୍କର ଲକ୍ଷ୍ୟ । ମାତ୍ର ପ୍ରଚାରକୁ କଳାର ରମଣୀୟ 'ସୁଗାର କୋଟ୍'

ଭିତରେ ଯୋଡ଼ାଇ ଦିଆଗଲା । ଏ ଦୃଷ୍ଟିରୁ ସେ ସମସାମୟିକ ଅନ୍ୟ ନାଟ୍ୟକାରମାନଙ୍କ-ଠାରୁ କିଛିଟା ସ୍ୱତନ୍ତ୍ର ବୋଲି ତେଣୁ ସ୍ୱୀକାର କରିବାକୁ ହେବ । ଲାଲ ମହାଶୟଙ୍କର ଲକ୍ଷ୍ୟ ଥିଲା ଶୁଭ । ମାଧ୍ୟମ ମଧ୍ୟ ବେଶ୍ ପ୍ରଭାବଶାଳୀ । ତେବେ ଯେଉଁ ସାଧାରଣ ଜନତାଙ୍କର ମଙ୍ଗଳ ନିମନ୍ତେ ଲାଲ ମହୋଦୟ ଏ ଉଦ୍ୟମ କରିଥିଲେ, ସେମାନେ ଏଥିରେ ସମ୍ପୃକ୍ତ ହୋଇପାରି ନ ଥିବା ଅବଶ୍ୟ ସ୍ୱତନ୍ତ୍ର କଥା ।

ଜଗନ୍ମୋହନ ନିଜ ପାଇଁ ନିଜେ ମାର୍ଗ ପ୍ରସ୍ତୁତ କରିଥିଲେ । ଜାତୀୟ ଜୀବନର ଘୋର ଦୁର୍ଦ୍ଦିନରେ ଓଡ଼ିଆରେ ଚେତନା ସୃଷ୍ଟି କରିବା ନିମନ୍ତେ ନିଜସ୍ୱ ଧାରାରେ ଉଦ୍ୟମ କରିଥିଲେ । 'ସର୍ବେ ଭବନ୍ତୁ ସୁଖୀନଃ—ଏହି ପାରମ୍ପରିକ ଆଦର୍ଶ ହିଁ ଥିଲା ତାଙ୍କର ଧ୍ୟେୟ । ପରମ୍ପରା ଓ ପ୍ରଗତିର ଏକ ସମନ୍ୱୟ ଘଟାଇ ଉଭୟ କ୍ଷେତ୍ରରୁ ଲୋକକଲ୍ୟାଣମୂଳକ ଉପାଦାନର ଚୟନରେ ସେ ନିଜର ସାହିତ୍ୟିକ ଆଦର୍ଶ ପ୍ରସ୍ତୁତ କରିଥିଲେ । ନାଟକ ଭଳି ସାହିତ୍ୟର ଏକମାତ୍ର ପ୍ରଭାବଶାଳୀ ବିଭାଗକୁ ସେ ପ୍ରାଚ୍ୟ ନାଟ୍ୟାଦର୍ଶର ଆବେଗ ପ୍ରାଧାନ୍ୟ ମଧ୍ୟରୁ ମୁକ୍ତକରି ତାହାର ଏକ ବିଶ୍ୱାସଯୋଗ୍ୟ ଜୀବନଧର୍ମୀ ସ୍ୱଚ୍ଛନ୍ଦରୂପ ପ୍ରସ୍ତୁତ କରିବାରେ 'ଭଗୀରଥ'ର ଭୂମିକା ଗ୍ରହଣ କରିଥିଲେ । ଏଣୁ ଓଡ଼ିଆ ମଞ୍ଚନାଟକର ଇତିହାସରେ ସେ ଗଣାଧିପତି ଗଜାନନଙ୍କ ଭଳି ଅଗ୍ରପୂଜ୍ୟ ହୋଇ ରହିବେ ବୋଲି ଆମର ବିଶ୍ୱାସ ।

**'ବାବାଜୀ' ନାଟକର ପୃଷ୍ଠଭୂମି :—**'ବାବାଜୀ' ନାଟକ ରଚିତ ଓ ପ୍ରକାଶିତ ହୁଏ ୧୮୭୭ ମସିହାରେ । ଉତ୍କଳ ଦୀପିକାର ୨୭ । ୧୦ । ୭୭ ତାରିଖର ସଂଖ୍ୟାରେ ନିମ୍ନ ବିଜ୍ଞାପନଟି ପ୍ରକାଶିତ ହୋଇଥିବାର ଦେଖିବାକୁ ମିଳେ ।

## ବିଜ୍ଞାପନ

### ବାବାଜୀ ନାଟକ

"ଏ ପୁସ୍ତକରେ ଜଣେ ଯଥାର୍ଥ ସାଧୁର ସୁଚରିତ୍ର ଓ ଉପଦେଶ, ବାବାଜୀର ମହିମା, ମହାପ୍ରଭୁଙ୍କ ଆଚରଣ, ହିନ୍ଦୁବାବୁର ସୁରାପାନ, ନବ୍ୟବାବୁ ଓ ଦେଶୀୟ ଖ୍ରୀଷ୍ଟିଆନ୍‌ର କୁସଂସ୍କାର, ଡାଆଣୀ, ଭୂତ, ଗାରଡ଼ି ବିଦ୍ୟା ଏବଂ ରହସ୍ୟ ଓ ହିତକର କଥାମାନ ଅଛି" ଶ୍ରୀ ଜଗନ୍ମୋହନ ଲାଲ ।

ଏଥିରୁ ଅନୁମାନ କରାଯାଇପାରେ ଯେ ନାଟକଟି ୧୮୭୭ ମସିହାର ପ୍ରଥମାର୍ଦ୍ଧରେ ରଚିତ ହୋଇଥିବା 'ବାବାଜୀ' ଆଧୁନିକ ଓଡ଼ିଆ ଭାଷାର ପ୍ରଥମ ମଞ୍ଚ ନାଟକ କିମ୍ବା ନୁହେଁ, ଏ ବିଷୟରେ ବହୁ ଆଲୋଚନା ହୋଇଯାଇଛି । ଅତୀତରେ ବହୁ ଭ୍ରମପୂର୍ଣ୍ଣ ତଥ୍ୟ ମଧ୍ୟ ଏ ସମ୍ପର୍କରେ ପ୍ରଚାରିତ ହୋଇଛି । ନାଟକର ପ୍ରକୃତ

ଲକ୍ଷଣ ଦୃଷ୍ଟିରୁ ଏହା 'ପ୍ରକୃତ ନାଟକ' ନୁହେଁ ବୋଲି କେହି କେହି କହୁଥିବାସ୍ଥଳେ, କିଏ ଅବା ଏହାକୁ 'ଯାତ୍ରା ଅପେକ୍ଷା ଉନ୍ନତ ଓ ସୁରୁଚିସମ୍ପନ୍ନ' ବୋଲି କହି ଏଥିପାଇଁ ଏହାକୁ 'ଅତି ଶିକ୍ଷାପ୍ରଦ ଗୀତିନାଟ୍ୟ'ର ସମ୍ମାନ ଅର୍ପଣ କରିଛନ୍ତି । ଅତ୍ୟଧିକ ସଙ୍ଗୀତର ପ୍ରୟୋଗ ଏବଂ ଲଘୁହାସ୍ୟ ରସର ପ୍ରୟୋଗରେ ଏହା ଯାତ୍ରାଧର୍ମୀ ହୋଇପଡ଼ିଛି ବୋଲି ସେମାନଙ୍କର ମତ ।

ଏହି ନାଟକ ପ୍ରକାଶିତ ହେବା ପରେ ସେକାଳର ପତ୍ରପତ୍ରିକା ଭିନ୍ନ ଭିନ୍ନ ଏବଂ କେତେକ କ୍ଷେତ୍ରରେ ପରସ୍ପର ବିରୋଧୀ ମନ୍ତବ୍ୟମାନ ମଧ୍ୟ ଦେଇଥିବାର ଦେଖିବାକୁ ମିଳୁଛି । 'ସମ୍ବାଦବାହିକା' ଏହାକୁ ନାଟକର ଗୌରବ ଅର୍ପଣ କରି ଲେଖିଥିଲେ "ଏମନ୍ତ ସ୍ଥଳେ ବାବାଜୀ ନାଟକର ପ୍ରଣେତା ବାବୁ ଜଗନ୍ମୋହନ ଲାଲ ସାହସ ଉପରେ ନିର୍ଭର କରି ଖଣ୍ଡିଏ ନାଟକ ପ୍ରଣୟନ କରିଅଛନ୍ତି । × × ଜଗନ୍ମୋହନ ବାବୁ ପ୍ରଥମେ ଆମ୍ଭମାନଙ୍କୁ ଆଶାରୁ ଅଧିକ ଏହି ନାଟକ ଖଣ୍ଡିକ ପ୍ରଦାନ କଲେ । × × ଗୃହସ୍ଥର ପ୍ରଥମ ଫଳ ପରି ପାଠକମାନଙ୍କୁ ଆମ୍ଭେମାନେ ଏହା ଦେଲୁଁ । (୧୦ମ ଭାଗ, ୮ମ ସଂଖ୍ୟା, ୧ । ୬ । ୧୮୭୭)

'ଉତ୍କଳ ଦୀପିକା' ଏହାର ଆଲୋଚନା କରି ଲେଖିଥିଲେ, "ଓଡ଼ିଆ ଭାଷାରେ ଏ ପର୍ଯ୍ୟନ୍ତ ନାଟକ ରଚନା ହୋଇ ନ ଥିଲା । ଏ ପୁସ୍ତକ ତହିଁର ପ୍ରଥମ ପୁସ୍ତକ ଅଟଇ । ଇଂରାଜୀ ସଂସ୍କୃତ ନାଟକର ଲକ୍ଷଣାନୁସାରେ ଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ । ନାଟକର ଭାଷା ଓ ରଚନାଛଟା କି ପ୍ରକାରର ହେବ । ଏ ସବୁ ଅତି ଚମତ୍କାର ରୂପେ ଗ୍ରନ୍ଥକର୍ତ୍ତା ଦେଖାଇଅଛନ୍ତି । ଏହା ଦ୍ୱାରା ନାଟକର ବାଟ ଫିଟିଲା । × × ଅଚିରେ ପ୍ରକୃତ ନାଟକ ଓଡ଼ିଆ ଭାଷାରେ ବାହାରିପାରେ ।" (୩ । ୧୧ । ୧୮୭୭)

ଜଣେ ଆଲୋଚକ ନାଟକଟିକୁ ବିଶ୍ଳେଷଣ କରିଥିଲେ, "ଆମ୍ଭେମାନେ ବାବାଜୀ ନାଟକଙ୍କୁ ସର୍ବାଙ୍ଗ ସୁନ୍ଦର ନାଟକ ସ୍ୱରୂପ ଦେଖୁ ନାହୁଁ କିମ୍ବା ଏପରି ଆଶା କରିଯାଇ ନ ପାରେ । କୌଣସି ଦେଶରେ କୌଣସି ଭାଷାରେ ପ୍ରଥମତଃ ସର୍ବାଙ୍ଗ ସୁନ୍ଦର ନାଟକ ବାହାରି ନାହିଁ । × × ଆମ୍ଭେ ଉତ୍କଳ ଦୀପିକାଙ୍କ ସହି ଐକ୍ୟହୋଇ କହୁଅଛୁଁ ଯେ, ବାବାଜୀ ନାଟକ ଉତ୍କଳରେ ନାଟକର ବାଟ ଅଟେ ।" ଏହା ଉପରେ ମନ୍ତବ୍ୟ ଦେଇ ସମ୍ପାଦକ ଲେଖିଥିଲେ, "ବାବାଜୀ ନାଟକକୁ ଆମ୍ଭେମାନେ ତୁଚ୍ଛ ଓ ନିନ୍ଦନୀୟ ବୋଲି କହୁନାହୁଁ, ମଧ୍ୟ ସର୍ବାଙ୍ଗ ସୁନ୍ଦର କହି ନ ପାରୁଁ । ନାଟକ ଲେଖିବାର ପ୍ରକୃତ ସମୟ ଓଡ଼ିଶାରେ ଉପସ୍ଥିତ ହୋଇ ନ ଥିବା ସତ୍ତ୍ୱେ ବାବାଜୀ ନାଟକର ପ୍ରଣେତା ଯେ ସାହସ ଉପରେ ନିର୍ଭର କରି ନାଟକ ଲେଖି ନାଟକ

ଲେଖିବାର ବାଟ ଦେଖାଇ ଅଛନ୍ତି, ଏଥିପାଇଁ ଆମ୍ଭେ ତାଙ୍କୁ ଧନ୍ୟବାଦ ଦେଉଅଛୁଁ। ଫଳତଃ ଏହି, ଗୋପୀନାଥ ବଲ୍ଲଭ ନାଟକ ଅପେକ୍ଷା ବାବାଜୀ ନାଟକ ଉତ୍ତମ ଅଟେ।"

ଆଲୋଚକ ଶିବକାଶୀଙ୍କର ସ୍ୱୟଂ ଲେଖିଲେ—"ବାସ୍ତବିକ ଏହି ବାବାଜୀ ନାଟକ ମୂଳତଃ ନାଟକ ନୁହେଁ। କିନ୍ତୁ ଏହା ଯାହା ଅପେକ୍ଷା ଅଧିକ ଉନ୍ନତ ଓ ସୁରୁଚିସମ୍ପନ୍ନ। ଏହା ଅତି କ୍ଷୁଦ୍ର ଶିକ୍ଷାପ୍ରଦ ଗୀତିନାଟ୍ୟ ଭିନ୍ନ ଆଉ କିଛି ନୁହେଁ। × × ଓଡ଼ିଆରେ ପ୍ରଥମ ନାଟକ ରଚିତ ହେଲା ୧୮୮୦ ମସିହାରେ।" (ଓଡ଼ିଆ ନାଟ୍ୟକଳା ପୃ: ୭୪)

## ବାବାଜୀ ନାଟକ ରଚନାର ଭିତ୍ତି : ଆହରଣ ଓ ସମୀକରଣ—

ଆଧ୍ୟାତ୍ମିକତାର ଆଚ୍ଛାଦନରେ ଭଣ୍ଡାମି ଓ ବ୍ୟଭିଚାର କିଛି ନୂଆ କଥା ନୁହେଁ। ମଣିଷ ମାତ୍ରେ ହିଁ ସୁବିଧାବାଦୀ। ନିଜ ସ୍ୱାର୍ଥ ପାଇଁ ସେ ନ କରିପାରେ, ଏଭଳି କଥା ନାହିଁ। କେବେ ଧର୍ମର ଦ୍ୱାହିଦେଇ ଭଣ୍ଡ-ଧାର୍ମିକମାନେ ସେମାନଙ୍କର ଗୋପନ ପାପ ଓ ବ୍ୟଭିଚାରକୁ ପ୍ରକଟିତ ହେବାକୁ ଦିଅନ୍ତି ନାହିଁ। ସାଧାରଣ ଜନତାର ଅଜ୍ଞତା ଓ ନିରୀହତାର ସୁଯୋଗନେଇ ସେମାନେ ମୁଖାପିନ୍ଧି ବସି ଥାଆନ୍ତି। ମାତ୍ର କେବେକେବେ ସେମାନଙ୍କ ମୁଖା ଖସିପଡ଼େ ଏବଂ ତା' ତଳୁ ଯଥାର୍ଥ ସ୍ୱଭାବ ଚେହେରାଟି ବାହାରକୁ ବାହାରି ପଡ଼େ। ଉନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଏ ଦେଶରେ ଶିକ୍ଷାର ପ୍ରସାର ହେବାରୁ ଏକ ସଚେତନ ଗୋଷ୍ଠୀ ଆତ୍ମପ୍ରକାଶ କଲେ, ଯେଉଁମାନେ ଏ ଧରଣର ଧର୍ମଧ୍ୱଜ ନେତାଙ୍କର ସ୍ୱରୂପ ଉଦ୍‌ଘାଟନ ନିମନ୍ତେ ସତତ ପ୍ରଯତ୍ନଶୀଳ ଥିଲେ। ସେକାଳର ପତ୍ରପତ୍ରିକାରେ ଏମାନଙ୍କ ସମ୍ପର୍କରେ ବହୁ ଚାଞ୍ଚଲ୍ୟକର ତଥ୍ୟ ଉଦ୍‌ଘାଟିତ ହୋଇଥିବାର ଦେଖିବାକୁ ମିଳିଛି। ଜଣେ ସଚେତନଶୀଳ ବୁଦ୍ଧିଜୀବୀ ରୂପରେ ଜଗନ୍ମୋହନ ନିଶ୍ଚୟ ସମାଜର ଏହି ଦୁଷ୍ଟବ୍ରଣମାନଙ୍କର କାର୍ଯ୍ୟକଳାପରେ ବ୍ୟଥିତ ହୋଇଥିବେ। ସେତିକିବେଳେ ବଙ୍ଗ ପ୍ରଦେଶର ତାରକେଶ୍ୱର ମଠ ମହନ୍ତଙ୍କ ସମ୍ପର୍କରେ ଏକ ଚାଞ୍ଚଲ୍ୟକର ସମ୍ବାଦ ସମଗ୍ର ଦେଶରେ ଚହଳ ସୃଷ୍ଟି କରିଥିଲା। ଘଟଣାଟି ସଂକ୍ଷେପରେ ଏହିଥି। ନବୀନଚନ୍ଦ୍ର ବିବାହ କରିଥିଲେ ଏଲୋକେଶୀଙ୍କୁ। ସ୍ତ୍ରୀଙ୍କୁ ପିତାଳୟରେ ଛାଡ଼ି ବରଗ ନବୀନ କଲିକତାରେ ଚାକିରି କରୁଥିଲେ। ଏଲୋକେଶୀ ତାରକେଶ୍ୱର ମଠାଧୀଶ ମାଧବ ଗିରି ଦ୍ୱାରା ଭୋଳବାଇ ବ୍ୟଭିଚାରରେ ଲିପ୍ତ ହେଲେ। ନବୀନ ସ୍ତ୍ରୀଙ୍କୁ ସେଠୁ ନେଇଯିବା ନିମନ୍ତେ ଯେତେ ଚେଷ୍ଟାକଲେ, ମହନ୍ତର ଷଡ଼ଯନ୍ତ୍ରରେ ସେ ସମସ୍ତ ବ୍ୟର୍ଥ ହୋଇଗଲା। କ୍ରୋଧରେ ନବୀନ ସ୍ତ୍ରୀଙ୍କୁ ହତ୍ୟା କରେ। ନବୀନର ଦ୍ୱୀପାନ୍ତର ହୁଏ, ମହନ୍ତ ପାଏ ୩ ବର୍ଷ କାରାଦଣ୍ଡ। ବଙ୍ଗଳା ଭାଷାରେ ଏହି ବିଷୟକୁ ନେଇ ୧୮୭୩

ମସିହାରୁ ୧୮୮୦ ମଧ୍ୟରେ ପନ୍ଦର ଖଣ୍ଡି ନାଟକ, ପ୍ରହସନ ରଚିତ ତଥା ଅଭିନୀତ ହୋଇଥିବାର ଦେଖିବାକୁ ମିଳୁଛି । ଲକ୍ଷ୍ମୀନାରାୟଣ ଦାସଙ୍କ ରଚିତ 'ମୋହାନ୍ତେର ଏଇ କି କାଜ' ପ୍ରହସନ, ୧୮୭୩ ମସିହା ସେପ୍ଟେମ୍ବର ମାସ ତେର ତାରିଖ ଦିନ ହିନ୍ଦୁ ନାସନାଲ ଥିଏଟର (ଚିଁଚୁଡ଼ା)ରେ ପ୍ରଥମ ଅଭିନୀତ ହୋଇ ସମଗ୍ର ରାଜ୍ୟରେ ଅଭୂତପୂର୍ବ ଲୋକପ୍ରିୟତା ହାସଲ କରିଥିବାରୁ ତାହାର ପରବର୍ତ୍ତୀ ବର୍ଷମାନଙ୍କରେ ଭିନ୍ନ ଭିନ୍ନ ନାଟ୍ୟକାର ସେଇ ବିଷୟକୁ ନେଇ ନାଟକାଦି ରଚନା କଲେ । ଆମର ଦୃଢ଼ବିଶ୍ୱାସ ଜଗନ୍ମୋହନଙ୍କ ଦୃଷ୍ଟିରେ ଏଇ ଶୃଙ୍ଖଳାର ଘଟଣାଟି ନିଶ୍ଚୟ ପଡ଼ିଥିଲା ଏବଂ ଏହାହିଁ ହେଉଛି 'ବାବାଜୀ' ନାଟକର ମୂଳ ଉତ୍ସ ।

ଓଡ଼ିଶାରେ ମଧ୍ୟ ମଠ ମହନ୍ତମାନଙ୍କର ବ୍ୟଭିଚାର ଘଟଣାର ଅଭାବ ନଥିଲା । କଟକର ଗୋପାଳଜୀଉ ମଠର ମହନ୍ତ 'ଠାକୁରଙ୍କ ଅଙ୍ଗାଭରଣ' ଏବଂ ଅନ୍ୟାନ୍ୟ କେତେକ ବହୁମୂଲ୍ୟ ପଦାର୍ଥ ଆତ୍ମସାତ୍ କରିଥିବାର ବିବରଣୀ ପ୍ରକାଶିତ ହୋଇଥିଲା । (ଉତ୍କଳ ଦୀପିକା—୧୯ । ୮ । ୧୮୭୮) ପୁଣି ବାଲିକ ଦାସ ମଠର ମହନ୍ତ ଠାକୁରଙ୍କ ସହିତ ବିଶ୍ୱାସଘାତକତା କରି ଏକବର୍ଷ କାରାଦଣ୍ଡ ଲାଭ କରିଥିଲେ । (ଉତ୍କଳ ଦୀପିକା—୩୧ । ୧୦ । ୭୮) ସତ୍ୟନାଦୀ ମଠର ସୁପରିଣ୍ଟେଣ୍ଡେଣ୍ଟ ପ୍ରତାରଣା ଅଭିଯୋଗରେ ସସ୍ପେଣ୍ଡ ହୋଇଥିଲେ । (ତା ୯ । ୯ । ୧୮୬୭) ମଠ, ମନ୍ଦିର, ସଦାବର୍ତ୍ତ ପ୍ରଭୃତି ଅନୁଷ୍ଠାନଗୁଡ଼ିକରେ ସେ ସମୟରେ ଧର୍ମ ନାମରେ ଯେଉଁ ନାରକୀୟ କାଣ୍ଡ ଚାଲୁଥିଲା, ପୂର୍ବୋକ୍ତ ସମ୍ବାଦଗୁଡ଼ିକରେ ତାହାର ଯଥାର୍ଥରୂପ ଫୁଟିଉଠିଛି । ଭଣ୍ଡ-ଅଧିକାରୀମାନଙ୍କର ଯଥାର୍ଥ ରୂପ ସହିତ ସାଧାରଣ ଜନତାର ପରିଚୟ ଘଟାଇବା ହିଁ ଥିଲା ଏହିସବୁ ସମ୍ବାଦର ଲକ୍ଷ୍ୟ । ଧର୍ମଧ୍ୱଜୀମାନଙ୍କ ବିରୁଦ୍ଧରେ ଅଙ୍ଗୁଳିନିର୍ଦ୍ଦେଶ, ଏ ଦେଶର ଧର୍ମଭୀରୁ ଜନତାଙ୍କର ସ୍ୱପ୍ନର ଅଗୋଚର ଥିଲା । ତେବେ ହେତୁବାଦୀ-ଚେତନାର କ୍ରମବିସ୍ତାର ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ପ୍ରଭାବ ଫଳରେ ଧୀରେ ଧୀରେ ଘଟୁଥିଲା । 'ବାବାଜୀ' ନାଟକର କଥାବସ୍ତୁ କଳ୍ପନା-ବାସ୍ତବ ସତ୍ୟରୁ କିଛି ଆହରଣ ଏବଂ ସମୀକରଣ ମାଧ୍ୟମରେ ହିଁ ଘଟିଥିଲା ।

'ବାବାଜୀ' ନାଟକରେ ମଠ ମନ୍ଦିରର ବ୍ୟଭିଚାର ସହିତ ଭୂତ, ଡାହାଣୀ, ଗୁଣି, ଗାରେଡ଼ି ପ୍ରଭୃତି ଅନ୍ଧବିଶ୍ୱାସ ସମ୍ପର୍କରେ ମଧ୍ୟ ସୂଚିତ ହୋଇଛି । ସେ ସମୟର ସମାଜରେ ଏ ଧରଣର ବହୁ କୁସଂସ୍କାର ପ୍ରଚଳିତ ଥିଲା ଏବଂ ପତ୍ର ପତ୍ରିକାରେ ମଧ୍ୟ ତତ୍ସମ୍ପର୍କୀୟ ବିବରଣୀ ବେଳେ ବେଳେ ଦେଖିବାକୁ ମିଳୁଥିଲା । ୧୮୭୭ ମସିହା ନଭେମ୍ବର ମାସରେ ଖୋଦ୍ କଟକ ସହରରେ 'ମକରବା ଭୂତ'ର ଟଉ ଚମତ୍କାରୀ ଲୀଳା ସମ୍ପର୍କରେ 'ଦୀପିକା'ରେ ପ୍ରକାଶିତ ହୋଇଥିଲା । 'ବାବାଜୀ' ନାଟକ ପାଇଁ

ଏଭଳି ଘଟଣାମାନଙ୍କରୁ ଖୁବ୍ ଉପାଦାନ ସଂଗୃହୀତ ହୋଇଥିବା ସମ୍ଭବ । ମୋଟ ଉପରେ ତେଣୁ କୁହାଯାଇପାରେ ଯେ, 'ବାବାଜୀ' ନାଟକର କଥାବସ୍ତୁ ନାଟ୍ୟକାରଙ୍କର ସମ୍ପୂର୍ଣ୍ଣ କାଳ୍ପନିକ ନୁହେଁ । ବସ୍ତୁ ଜଗତର ନିର୍ମମ ସତ୍ୟ ସହିତ କଳ୍ପନାର ସମନ୍ୱୟ ଘଟାଯାଇ ହିଁ ଏହାର କଥାବସ୍ତୁ ପ୍ରସ୍ତୁତ ହୋଇଥିଲା ।

## 'ବାବାଜୀ' ଯଥାର୍ଥରେ ଏକ ନାଟକ କି ?

ନାଟକ ସମ୍ପର୍କରେ ଆଲୋଚନା କରୁଥିବା କେତେକ ତତ୍ତ୍ୱବିଦ୍ ଏଭଳି ଏକ ପ୍ରଶ୍ନ ଉଠାଇଥିବାରୁ ସେ ସମ୍ପର୍କରେ କିଛି ସୂଚନା ଦେବା ଆବଶ୍ୟକ ହେଉଛି ।

କାହାକୁ ନାଟକ କୁହାଯାଏ, ଏ ପ୍ରଶ୍ନର ଉତ୍ତର୍ ମିଳେ 'ନାଟ୍ୟ ଦର୍ପଣ'ର ନିମ୍ନୋକ୍ତରୁ ଯେଉଁଠି କୁହାଯାଇଛି, "ନାଟକମିତି ନ ଟସ୍ୟତି ବିଚିତ୍ର ରଞ୍ଜନା ପ୍ରବେଶେନ ସଭ୍ୟାନାଂ ହୃଦୟଂ ନର୍ତ୍ତୟତୀତି ନାଟକମ୍" ଅଭିନୟ ମାଧ୍ୟମରେ ଯେଉଁଠି କଳାର ବିଚିତ୍ର ସୌନ୍ଦର୍ଯ୍ୟ ପ୍ରମାଣ ପୂର୍ବକ ସହୃଦୟମାନଙ୍କୁ ନନ୍ଦିତ କରିବାର ଉଦ୍ୟମ ହୋଇଥାଏ ତାହାହିଁ ହେଉଛି ନାଟକ । ଅନ୍ୟ କଥାରେ ହେଉଛି କଳାର ବିଚିତ୍ର ସୁନ୍ଦର ଆଲେଖ୍ୟର ଅଭିନୟାତ୍ମକ ରୂପ । ଏହି ମନ୍ତବ୍ୟର ପରିପ୍ରେକ୍ଷୀରେ ନାଟକକୁ କଳାର ଏକ ମର୍ମଗ୍ରାହୀ ରୂପର ସ୍ୱୀକୃତି ଦିଆଯାଇ ପାରିବ କିମ୍ବା ନାହିଁ, ତାହାହିଁ ହେଉଛି ଆମର ବକ୍ତବ୍ୟ । ମନୋରଞ୍ଜନ ଏବଂ ଶିକ୍ଷାଦାନକୁ ଯଦି କଳାର ପ୍ରଧାନ ଲକ୍ଷ୍ୟ ବୋଲି ଗ୍ରହଣ କରି ନିଆଯାଏ, ତେବେ ସ୍ୱୀକାର କରିବାକୁ ହେବ ଯେ, ଉଭୟ ବ୍ୟାପାରର ବହୁ ଉପାଦାନ 'ବାବାଜୀ' ନାଟକରେ ସଂଗୃହୀତ ହୋଇଛି । 'ବାବାଜୀ'ର ଆଦର୍ଶ ଚରିତ୍ର, ଆନନ୍ଦ ପଣ୍ଡା ପୂଜାରୀର କୌତୁକ ଛଳନା ପରାୟଣତା, ମଠାଧୀଶମାନଙ୍କର ଐହିକ ସୁଖ ଲୋଲୁପତା ଧନାଢ୍ୟ ସାମନ୍ତମାନଙ୍କର ହାସ୍ୟକର ଅବସ୍ଥା, ସାଧାରଣ ଜନତାର କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରଭୃତି ବହୁ ରୋମାଞ୍ଚକର ବିଷୟର ଅବତାରଣାରେ ଆଲୋଚ୍ୟ ନାଟକଟି ଋଦ୍ଧିମନ୍ତ । ଏଥିରେ ପୁଣି ହାସ୍ୟ, କରୁଣ, ଶୃଙ୍ଗାର ପ୍ରଭୃତି ଭିନ୍ନ ଭିନ୍ନ ରସର ଅବତାରଣା କରାଯାଇ ଭିନ୍ନ ରୁଚିର ଦର୍ଶକମାନଙ୍କୁ ସନ୍ତୁଷ୍ଟ କରାଇବା ନିମନ୍ତେ ଉଦ୍ୟମ କରାଯାଇଛି । ସମାଜ ଜୀବନର ଗୋଟିଏ ଦୂଷିତ ଅଂଶକୁ ଦର୍ଶକମାନଙ୍କ ନିକଟରେ ବେଶ ପ୍ରଭାବଶାଳୀ ରୂପରେ ଏଥିରେ ଉପସ୍ଥାପନ କରାଇବା ନିମନ୍ତେ ଉଦ୍ୟମ କରାଯାଇଛି । ଧର୍ମ ସମାଜ ସଚେତନତା ତଥା ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ ଏ ଉଭୟ ପ୍ରବୃତ୍ତିରୁ ଏହାର ସୃଷ୍ଟି । ସମାଜ ସଂସ୍କାର ହେଉଛି ଏହାର ଲକ୍ଷ୍ୟ ।

ସମସ୍ୟା ମୂଳକ କଥାବସ୍ତୁ, ବିଶ୍ୱାସଯୋଗ୍ୟ ଚରିତ୍ର ପାତ୍ରୋପଯୋଗୀ ସଂଳାପ । ସାର୍ଥକ ନାଟକର ଏ ତିନୋଟି ମୁଖ୍ୟ ଉପାଦାନ ଏଥିରେ ବର୍ତ୍ତମାନ । ପୁଣି ଦ୍ୱନ୍ଦ୍ୱ, ଉତ୍କଣ୍ଠା, ସଙ୍ଗୀତ ପ୍ରଭୃତି ନାଟକର ଅନ୍ୟାନ୍ୟ ଆନୁଷଙ୍ଗିକ ଉପାଦାନ ମଧ୍ୟ ଏଥିରେ

ରହିଛି । ସଂସ୍କୃତ ନାଟକର ନାନ୍ଦୀ, ସୂତ୍ରଧାର, ନଟ, ନଟୀ ଇତ୍ୟାଦି ଆଧୁନିକ ନାଟକ ନିମନ୍ତେ ଉପାଦେୟ ନୁହେଁ ବୋଲି ସ୍ୱୀକାର କରାଯାଇ ସେସବୁକୁ ଏଥିରୁ ବାଦ୍ ଦିଆଯାଇଛି । ତେବେ ସଂସ୍କୃତ ନାଟକର ଦୃଶ୍ୟ ବହିର୍ଗତ ପ୍ରତି ଉଦାସୀନତାକୁ ଏଥିରେ ଗ୍ରହଣ କରି ନିଆଯାଇଛି । ଦୃଶ୍ୟବହିର୍ଗତ ଅନେକ ସମୟରେ ନାଟକର ସ୍ୱଚ୍ଛନ୍ଦ ଗତିରେ ବାଧକ ସ୍ୱରୂପ ହୋଇଥାଏ । ଅଧୁନିକ ମଞ୍ଚ ସଫଳ ନାଟକରୁ ଦୃଶ୍ୟ ବହିର୍ଗତକୁ ବାଦ୍ ଦିଆଯାଇ ଏହାକୁ ପ୍ରମାଣ କରାଯାଇ ପାରିଛି । ମନୋରଞ୍ଜନ ଦାସଙ୍କର 'ସାଗର ମନ୍ଥନ' ଉପେନ୍ଦ୍ର କିଶୋର ଦାସଙ୍କର 'କନ୍ୟାଘର' ପ୍ରଭୃତି ନାଟକର ସଫଳତାରୁ ଏହା ଜଣାପଡ଼ିବ । ଆଜିଠାରୁ ଶତାଧିକ ବର୍ଷ ପୂର୍ବେ ଲେଖକଙ୍କ ପୂର୍ବୋଦ୍ଦୃଷ୍ଟି ନେଇ ସ୍ୱର୍ଗୀୟ କଲ୍ଲ ଯାହା କରିଯାଇଥିଲେ, ସେଥିରୁ ତାଙ୍କର ପ୍ରତିଭାର ପରିଚୟ ହିଁ ମିଳୁଛି । ସଫଳ ନାଟକର ଏ ସମସ୍ତ ଗୁଣ ଯେତେବେଳେ 'ବାବାଜୀ' ନାଟକରେ ରହିଛି, ସେତେବେଳେ 'ବାବାଜୀ'କୁ ଏକ ଯଥାର୍ଥ ନାଟକର ଗୌରବ ଦିଆ ନଯିବାର କୌଣସି କାରଣ ନାହିଁ ।

ନାଟକରେ ଜୀବନର ଏକ ସାମାଜିକ ସ୍ଥିତିମିତର ଜୀବନ୍ତ ପ୍ରତିଲିପିକୁ ଦେଖିବାକୁ ମିଳିଥାଏ । ଆଲୋଚ୍ୟ ନାଟକରେ ଜୀବନର ଏକ ସାର୍ଥକ ଅନୁସରଣ ସମସାମୟିକ ଘଟଣାର ଆସ୍ୱାଦ ବସ୍ତୁର ସାର୍ଥକ ପ୍ରତିଫଳନ ଏବଂ ସତ୍ୟର ଯଥାର୍ଥ ପରିସ୍ଫୁଟନ ଘଟିଛି । 'ବାବାଜୀ'ର କଥାବସ୍ତୁ ଏବଂ ଚରିତ୍ର ସମସାମୟିକ ସମାଜ ବୃତ୍ତରୁ ହିଁ ସଂଗୃହୀତ । ଏଥିରେ ସ୍ଥାନ ପାଇଥିବା ଭଗବାନ୍ ପଦାଶ୍ରୟୀ ବାବାଜୀ, ଧର୍ମଗୁରୁ ଭୂସ୍ୱାମୀ ସୁବଳ ପଟ୍ଟନାୟକ, ପ୍ରଚାରକ ଆନନ୍ଦପଣ୍ଡା, ମଦ୍ୟପ ଯଦୁ ଭଟ୍ଟାଚାର୍ଯ୍ୟ, ନାରୀ ଲୋଲୁପ ମଠାଧିକାରୀ, ଅନୁତପ୍ତା ରାଧୀ, ପ୍ରେମୀ, ଶିବ ମିଶ୍ର, ଜେମ୍ସ ଦଲାଇ ପ୍ରଭୃତି ପ୍ରତ୍ୟେକଟି ଚରିତ୍ର ସମସାମୟିକ ସମାଜ ଗର୍ଭରୁ ହିଁ ଉନ୍ମୋଳିତ । ଇଂରେଜ ସଂସର୍ଗରେ ସେ ସମୟରେ ମଦ୍ୟପାନ ଏବଂ ବାରାଙ୍ଗନା ପ୍ରୀତି ନାମକ ଯେଉଁ ଦୁଇ ନୂତନ ଉପସର୍ଗର ପ୍ରକାଶ୍ୟ ଅନୁସରଣ ଅଭିଜାତ ସମାଜରେ ଚାଲିଥିଲା, ସାହିତ୍ୟ ମାଧ୍ୟମରେ ଏହାର ପ୍ରତିବାଦ କରାଯାଉଥିଲା । ଅବଶ୍ୟ ଏ ଦୁଇଟି କଥା ଯେ, ଇତିପୂର୍ବରୁ ଆମର ସମାଜରେ ନଥିଲା, ଏହା ନୁହେଁ । ତେବେ ସେ କାଳରେ ଏଥିପାଇଁ କିଛିଟା ଗୋପନୀୟତା ଅବଲମ୍ବନ କରାଯାଉଥିଲା । ଇଂରେଜମାନଙ୍କ ସଂସ୍ପର୍ଶରେ ଆସିବାପରେ ଏହାକୁ ଖୋଲା ଖୋଲି ଭାବରେ ସ୍ୱୀକୃତି ଦେଇ ଦିଆଗଲା । ବଙ୍ଗ ଦେଶରେ ଗଳ୍ପ ଉପନ୍ୟାସ, ନାଟକ ମାଧ୍ୟମରେ ଏହା ବିରୁଦ୍ଧରେ ସ୍ୱର ଉଠାଯାଉଥିଲା । ସେଠାରେ ଦୀନବନ୍ଧୁ ମିତ୍ର, ରାମନାରାୟଣ ତର୍କରତ୍ନ, ଜ୍ୟୋତିରିନ୍ଦ୍ର ମିତ୍ର, ମାଇକେଲ ମଧୁସୂଦନ, ନଗେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ, ପ୍ରମୁଖ ଲେଖକମାନେ ପୂର୍ବୋକ୍ତ ଦୁଇ ପ୍ରବୃତ୍ତିର ବିଷମୟ ପରିଣାମ ସମ୍ପର୍କରେ ନିଜ ନିଜ ଲେଖାରେ ବର୍ଣ୍ଣନା କରିଥିଲେ । ବାବାଜୀ ନାଟକରେ ବାବୁ ସୁବଳ ପଟ୍ଟନାୟକ, ଯଦୁ ଭଟ୍ଟାଚାର୍ଯ୍ୟ ପ୍ରଭୃତିଙ୍କ ମାଧ୍ୟମରେ ମଦ୍ୟପାନର ପରିଣାମ

ସମ୍ପର୍କରେ ସୂଚନା ଦିଆଗଲା । ପୂଜାରୀ ଆନନ୍ଦ ପଣ୍ଡା ମାଧ୍ୟମରେ ସେକାଳର କୁସଂସ୍କାର ଗ୍ରସ୍ତ ସମାଜର ଏକ ସନ୍ଦେହପ୍ରବଣ ଦର୍ଶକମାନଙ୍କ ସମ୍ମୁଖରେ ଅଙ୍କାଗଲା । ଶାନ୍ତିପୂର୍ଣ୍ଣ ଧର୍ମୀୟ ସଦ୍ଭାବସ୍ଥାନର ଏକ ଚିତ୍ର ଅଙ୍କିତ ହୋଇ କେମିତି ଦଳାଇ, ଶିବ ମିଶ୍ର ପ୍ରଭୃତି ଚରିତ୍ର ମାଧ୍ୟମରେ । ସୁଧୀ, କେମୀ ପ୍ରଭୃତି ନାଗରିକ ଶୋଷିତ ଗୋଷ୍ଠୀର ଏବଂ ମାଳଗ୍ରାମ, ଗାର ଏବଂ ଅଧିକାରୀ ପ୍ରଭୃତି ଦଳିତଗୋଷ୍ଠୀର ପ୍ରତିନିଧି ରୂପରେ ଏହି ନାଟକରେ ସ୍ଥାନ ପାଇଛନ୍ତି । ଫଳରେ ଏହି ଯେ, ଚରିତ୍ର ଚିତ୍ରଣ, ଘଟଣାବିନ୍ୟାସ ଏବଂ କଥାବସ୍ତୁ ନିର୍ବାଚନରେ ନାଟ୍ୟକାର ମୁଖ୍ୟତଃ ସମସାମୟିକ ସମାଜ ଉପରେ ହିଁ ନିର୍ଭର କରିଛନ୍ତି । ତେଣୁ ଆଲୋଚ୍ୟ ନାଟକଟି ସେକାଳର ସମାଜର ଖଣ୍ଡିଏ ଉତ୍କୃଷ୍ଟ ପ୍ରତିଲିପି ହୋଇପାରିଛି ।

ଏଥିରେ ପୁଣି ସାମାଜିକ ପ୍ରଚଳିତ ଆସ୍ଥାର ବ୍ୟବହାର ପ୍ରଭୃତିର ମଧ୍ୟ ଆଲୋଚନା କରାଯାଇଛି । ହିନ୍ଦୁ ଗୃହସ୍ଥର ଅତିଥି ସେବା, ମଠର ଦିନଚର୍ଯ୍ୟା ଓ ମଠଧିକାରୀମାନଙ୍କର କାର୍ଯ୍ୟକଳାପ, ଅନ୍ଧବିଶ୍ୱାସ ଓ କୁସଂସ୍କାରର ଭୂମିକା, ସାଧାରଣ ଜନତାର ସରଳ ବିଶ୍ୱାସ ଏବଂ ଧର୍ମଭୀରୁତା ପ୍ରଭୃତି ବହୁ ବ୍ୟାପାର ଏହି ନାଟକରେ ସ୍ଥାନ ପାଇଛି । ତେଣୁ ଏହାକୁ ଏକ ଯଥାର୍ଥ ନାଟକର ସ୍ୱୀକୃତି ଦେବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ନାଟ୍ୟ-ସଂଳାପ ହେଉଛି ଏକ ସଫଳ ନାଟକର ପ୍ରାଣ ସଦୃଶ । ଚରିତ୍ରର ଶିକ୍ଷାଦୀକ୍ଷା, ସାମାଜିକ ସ୍ଥିତି, ବୟସ ପ୍ରଭୃତିକୁ ଆଖି ଆଗରେ ରଖି ନାଟ୍ୟକାର ସେମାନଙ୍କ ପାଇଁ ଯେଉଁ ସଂଳାପ ଯୋଜନା କରନ୍ତି, ତାହାକୁ କୁହାଯାଏ ପାତ୍ରୋପଯୋଗୀ ସଂଳାପ । 'ବାବାଜୀ'ର ଚରିତ୍ର ଲିପି ସେକାଳର ସମାଜ ବୃତ୍ତରୁ ହିଁ ଆହୃତ । ସେମାନେ ସମସ୍ତେ ଜଗନ୍ମୋହନଙ୍କ ଆଖପାଖର ଲୋକ । ସେମାନଙ୍କ ପାଟିରେ ଭାଷା ଦେବାପାଇଁ କୃତୀନାଟ୍ୟକାରଙ୍କୁ ତେଣୁ ଆଦୌ ହରବରରେ ପଡିବାକୁ ହୋଇନାହିଁ, କିମ୍ବା କଳ୍ପନାପ୍ରସୂ ହେବାକୁ ପଡିନାହିଁ । ସ୍ୱତଃସ୍ଫୂର୍ତ୍ତି ଭାବରେ ବିନା ଚିନ୍ତାରେ ହିଁ ଏ ସବୁ ସଂଳାପ ନାଟ୍ୟକାରଙ୍କ କଲମରୁ ବାହାରି ଆସିଛି । ଅଭିଜାତ ସୁବଳ ପଟ୍ଟନାୟକଙ୍କ ପଦୋଚିତ ଗାମ୍ଭୀର୍ଯ୍ୟ ଏ ସଂଳାପରେ ଯେମିତି ଚମତ୍କାର ଭାବରେ ଫୁଟି ଉଠିଛି, ପାନ-ପ୍ରମତ୍ତ ମଦ୍ୟପ ବୃନ୍ଦାବନ ତିଆରୀର ମଧ୍ୟ ଠିକ୍ ସେମିତି ଯଥାଯଥ ଭାବରେ ପ୍ରକାଶିତ ହୋଇଛି । ଜୀବନ ଓ ଜୀବିକା ପ୍ରତି ସଦା ଅସନ୍ତୁଷ୍ଟ ଏକ ଧୂର୍ତ୍ତ ବ୍ୟକ୍ତି-ଆନନ୍ଦ ପଣ୍ଡାପାଇଁ ମଧ୍ୟ ନାଟ୍ୟକାର ଉପଯୁକ୍ତ ସଂଳାପ ଯୋଜନାରେ ସକ୍ଷମ ହୋଇଛନ୍ତି । ଧନୀ, ଦରିଦ୍ର, ସାଧୁ, ଖଳ – ପ୍ରତ୍ୟେକଟି ଚରିତ୍ର ପାଇଁ ନାଟ୍ୟକାରଙ୍କର ଯେଉଁ ସଂଳାପ ଯୋଜନା କରିଛନ୍ତି ସେ ସବୁ ଶିଳ୍ପୋଚିତ ମର୍ଯ୍ୟାଦାରେ ଉପାଦେୟ ଏବଂ ନାଟକୋଚିତ ଭାବରେ ମାର୍ଜିତ । ସେଗୁଡ଼ିକ ହିଁ ଚରିତ୍ରର ଆନନ୍ଦ ବିଷାଦ, ମାନ ଅଭିମାନ, କ୍ରୋଧ ଉଲ୍ଲାସ ପ୍ରଭୃତିକୁ

ଯଥାଯଥ ଭାବରେ ରୂପାୟିତ କରିପାରିଛି । ଏହା ହେଉଛି ସଫଳ ନାଟକର ଲକ୍ଷଣ । ଏଭଳି ଅକୃତ୍ରିମ ଭାଷା ସମ୍ଭାର ଯେଉଁ ନାଟକର, ତାକୁ ନାଟକର ସ୍ୱୀକୃତି ଦେବାରେ ଅସୁବିଧା କ'ଣ ?'

'ବାବାଜୀ' ହେଉଛି ଯଥାର୍ଥରେ ଆଧୁନିକ ଓଡ଼ିଆ ମଞ୍ଚ ନାଟକର ଆଦ୍ୟ-ପୁରୁଷ । ସେ କାଳରେ ନାଟକ ରଚନା ନିମନ୍ତେ କୌଣସି ତତ୍ତ୍ୱ ଇତ୍ୟାଦି ଉପଲବ୍ଧ ନଥିଲା । ପୁଣି ଦେଶର କୌଣସି କାଳରେ ନାଟ୍ୟ ନିୟମ ତତ୍ତ୍ୱ ତଥ୍ୟର ନିଗଡ଼ରେ ଜନକୁ ବାନ୍ଧି ରଖିବାକୁ ସମ୍ଭବ ନାହିଁ । ସୃଷ୍ଟିକୁ ଦେଖି ତତ୍ତ୍ୱ ନିର୍ଦ୍ଧାରିତ ହୁଏ । ତତ୍ତ୍ୱ ଦୃଷ୍ଟିରୁ 'ବାବାଜୀ' ନାଟକର ତ୍ରୁଟି ବିଚ୍ୟୁତିକୁ ଅସ୍ୱୀକାର କରି ନହେଲେ କେବଳ କୁହାଯାଇ ପାରେ ଯେ, କେଉଁ ସୃଷ୍ଟି ଏ ଜଗତରେ ତ୍ରୁଟିମୁକ୍ତ ? ଅମଡ଼ା ମାଡ଼, ଖାଲଖମା ଯୋଡ଼ି ଯେଉଁ ଦୁଃସାହସିକ ଅଭିଯାତ୍ରୀ ଆମପାଇଁ ପ୍ରଥମ ପଥଟିଏ ନିର୍ମାଣ କଲେ, ତା'ପ୍ରତି ଆମର କୃତଜ୍ଞତାର ସୀମା ନ ରହିବା କଥା ।

## 'ବାବାଜୀ ନାଟକ' ଓ ଏହାର ସମାଲୋଚକ :

୧୯୪୭ ମସିହାରେ ପ୍ରକାଶିତ ହୋଇଛି, କଲିକତା ବିଶ୍ୱବିଦ୍ୟାଳୟର ଇଂରାଜୀ ଓ ଆଧୁନିକ ଭାରତୀୟ ଭାଷା ବିଭାଗର ଅଧ୍ୟାପକ ପ୍ରିୟରଞ୍ଜନ ସେନଙ୍କର 'ଆଧୁନିକ ଓଡ଼ିଆ ସାହିତ୍ୟ (Modern Oriya Literature) ପୁସ୍ତକ । ସେନ୍ ମହାଶୟ ଓଡ଼ିଆ ଭାଷା ସମ୍ପର୍କରେ ଜଣେ ବିଶେଷଜ୍ଞ ଥିଲେ । ଏହି ପୁସ୍ତକର ଷଷ୍ଠ ଅଧ୍ୟାୟଟି ଓଡ଼ିଆ ନାଟ୍ୟ ସାହିତ୍ୟ ବିଷୟକ । ଦଶ ପୃଷ୍ଠାର ଏହି ଆଲୋଚନାଟିରେ ଓଡ଼ିଶାର ନାଟ୍ୟ ସାହିତ୍ୟ ସମ୍ପର୍କରେ ଏକ ଭସା ଭସା ବର୍ଣ୍ଣନା ରହିଛି ଏବଂ ସେତେବେଳ ପର୍ଯ୍ୟନ୍ତ ଓଡ଼ିଆ ନାଟ୍ୟ ସାହିତ୍ୟ ସମ୍ପର୍କରେ କୌଣସି ଆଲୋଚନା ଗ୍ରନ୍ଥ ବାହାରି ନ ଥିବାରୁ ସେନ୍ ମହୋଦୟ କେବଳ ଶୁଣାକଥା ଉପରେ ଭରସା କରି ନିଜର ଆଲୋଚନାଟି ପ୍ରସ୍ତୁତ କରିଥିବାର ଅନୁମାନ । ତେଣୁ ଏଥିରେ ବହୁ ତଥ୍ୟଗତ ତ୍ରୁଟି ରହିଛି । ଉଦାହରଣ ସ୍ୱରୂପ --ସେନ୍‌ଙ୍କ ମତରେ 'ଓଡ଼ିଶା ସଂସ୍କୃତ ପରମ୍ପରର ଶ୍ରେଷ୍ଠ ଅନୁଯାୟୀ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର ଜଣାଶୁଣା ନାଟକଗୁଡ଼ିକର ଅନୁବାଦ କରିବା ନିମନ୍ତେ କୌଣସି ପଦକ୍ଷେପ ନିଆଯାଇ ନଥିଲା । ପଣ୍ଡିତ ଗୋପୀନାଥ ନନ୍ଦ, ମୃତ୍ୟୁଞ୍ଜୟ ରଥ, ବାବୁ ମିହିରେନ୍ଦ୍ର ସିଂହ, ଏଭଳିକି ଉତ୍କଳକବି—ମଧୁସୂଦନ ରାଓ ଯେ ସଂସ୍କୃତ ଭାଷାର ପ୍ରାୟ ସମସ୍ତ ପ୍ରସିଦ୍ଧ ନାଟକର ଅନୁବାଦ କରି ପୂର୍ବରୁ କରି, ସେଗୁଡ଼ିକର ଅଭିନୟ କରାଇଥିଲେ, ଏହା ସେନ୍ ମହାଶୟ ଜାଣି-ନଥିଲେ । ଗୋଟିଏ ସଂସ୍କୃତ ନାଟକର ଏକାଧିକ ଅନୁବାଦ ମଧ୍ୟ ହୋଇଥିବାର ତ ତାଙ୍କର ନ ଜାଣିବାର କଥା । ଏଭଳି ଧରଣର ବହୁ ତ୍ରୁଟି ଏ ଆଲୋଚନାରେ ରହିଛି ।

ସେନ୍ ମହାଶୟ ରାମଶଙ୍କର ରାୟଙ୍କୁ ପ୍ରଥମ ଆଧୁନିକ ଓଡ଼ିଆ ନାଟ୍ୟକାରର ସମ୍ମାନ ଦେବା ସଙ୍ଗେ ସଙ୍ଗେ ତାଙ୍କର ପ୍ରଥମ ପ୍ରକାଶିତ କାବ୍ୟ 'ପ୍ରେମତତ୍ତ୍ୱ ଗାଥା' (୧୮୭୮)କୁ ରବୀନ୍ଦ୍ର ପ୍ରଭାବରେ ରଚିତ ବୋଲି ଦାବୀ କରିଛନ୍ତି । (ହାସ୍ୟରେ ଭ୍ରମାପ୍ରେମ) ୧୮୭୮ ମସିହା ବେଳକୁ ସତର ବର୍ଷର ତରୁଣ ରବୀନ୍ଦ୍ରନାଥ କେତେ ଲେଖିଥିଲେ ଏବଂ କ'ଣ ଲେଖି ଅନ୍ୟ ପ୍ରଦେଶର ଲେଖକମାନଙ୍କୁ ପ୍ରଭାବିତ କରିପାରିବାର ସାମର୍ଥ୍ୟ ଅର୍ଜନ କରିଥିଲେ, ତାହାର ପ୍ରକୃଷ୍ଟ ଆଲୋଚନାର କ୍ଷେତ୍ର ଏ ନୁହେଁ । କେବଳ ସେନ୍ ମହାଶୟଙ୍କ ଦୃଷ୍ଟିକୋଣ ସହିତ ପାଠକମାନଙ୍କର ପରିଚୟ କରାଇ ଦେବା ନିମନ୍ତେ ଏଇ ସୂଚନା ଦିଆଗଲା ।

ଆଲୋଚନାରେ ନାଟ୍ୟକାର ଭଞ୍ଜ ଦ୍ୱିତୀୟ ସ୍ଥାନ ପାଇଁ Next dramatist of note' ହୋଇଛନ୍ତି । ବାବାଜୀ ସମ୍ପର୍କରେ ତାଙ୍କର ମନ୍ତବ୍ୟ Which was practically not a play, at all, but a sketch with a purpose ଏବଂ "a drama directed against the use of intoxicating drugs''ର ଦ୍ୱିତୀୟାଂଶଟି କେବଳ ଆଂଶିକ ସତ୍ୟ ମାତ୍ର ହୋଇଛି । କାରଣ ନିଶା ସେବନ ବିରୁଦ୍ଧରେ ସ୍ୱର ଉତ୍ତୋଳନ 'ବାବାଜୀ' ନାଟକର ଏକମାତ୍ର ଲକ୍ଷ୍ୟ ନଥିଲା, ଯଦିଓ ମହାତ୍ମାଗାନ୍ଧୀଙ୍କର ନିଶାମୁକ୍ତି ଆନ୍ଦୋଳନ ଆରମ୍ଭ ହେବାର ବହୁପୂର୍ବରୁ ଜନମତୋଦ୍ବୋଧନ ଏ ଦେଶରେ ହୋଇ ନଥିଲେ । ତାଙ୍କ ମତରେ 'ବାବାଜୀ' ଆଦୌ ନାଟକ ନୁହେଁ, ମାତ୍ର ଗୋଟିଏ 'ନକ୍ସା' । ଏ ପ୍ରସଙ୍ଗରେ କେବଳ ଏତିକ କହିଲେ ଯଥେଷ୍ଟ ହେବ ଯେ, କେତୋଟି ଦୃଶ୍ୟର ଖଣ୍ଡ ଖଣ୍ଡ ଚିତ୍ର ପ୍ରଦାନ କରିବା ନିମନ୍ତେ, ଯେଉଁଠି କେତେକ ଚରିତ୍ରର ସାହାଯ୍ୟ ନିଆଯାଇଥାଏ, ତାହାକୁ ହିଁ 'ସ୍କେଚ୍' ବା ନକ୍ସା କୁହାଯାଇଥାଏ । ଏଥିରେ କୌଣସି ଚରିତ୍ରର ପୂର୍ଣ୍ଣାଙ୍ଗ ରୂପ ତେଣୁ ପରିସ୍ଫୁଟ ହୋଇପାରେ ନାହିଁ । 'ବାବାଜୀ' ହିଁ ହେଉଛି ଆଲୋଚ୍ୟ ନାଟକର ମୁଖ୍ୟ ଚରିତ୍ର । ସମ୍ପୂର୍ଣ୍ଣ ଆଦି-ମଧ୍ୟ-ଅନ୍ତ-ସମନ୍ୱିତ—ଏ ହେଉଛି ଏକ ପୂର୍ଣ୍ଣ ବିକଶିତ ଚରିତ୍ର । ଅନ୍ୟ ଚରିତ୍ରମାନେ ସହାୟକ ଚରିତ୍ର ରୂପେ ବାବାଜୀ ଚରିତ୍ରକୁ ପରିସ୍ଫୁଟ କରିବା ନିମନ୍ତେ ପରିକଳ୍ପିତ ହୋଇଛନ୍ତି । ପୁଣି ପୂଜାରୀ ଆନନ୍ଦ ପଣ୍ଡାକୁ ଏ ନାଟକର 'ପ୍ରତି ନାୟକ' ରୂପେ ଗ୍ରହଣ କଲେ, ଅନ୍ୟକୁ କାରଣ ନଥାଇ ହଇରାଣ କରିବା ନିମନ୍ତେ ଏହାର ସୃଷ୍ଟି କରାଯାଇ ଅନୁତାପରେ ଏହାକୁ ପୂର୍ଣ୍ଣରୂପ ଦିଆଯାଇଛି । ନାଟକର ଦୁଇଟି ମୁଖ୍ୟ ଚରିତ୍ରର ପୂର୍ଣ୍ଣାଙ୍ଗ ବିକାଶ ଯେଉଁ ନାଟକରେ ଦେଖିବାକୁ ମିଳୁଛି । ତାକୁ କିଭଳି 'ନକ୍ସା' ଆଖ୍ୟା ଦିଆଯାଇପାରିବ, ଏହି ବିଚାରର ଦାୟିତ୍ୱ ପାଠକମାନଙ୍କ ଉପରେ ଛାଡ଼ିଦିଆ ଯାଉଛି । ସମାଲୋଚନା ସାହିତ୍ୟର ଏହି ଦୁର୍ଗତି ସହ ସେ କାଳରେ ଓଡ଼ିଆ-ମାନଙ୍କର କୌଣସି ପରିଚୟ ଥିବାର ଜଣାଯାଏ ନାହିଁ । ବଙ୍ଗଳା ଭାଷାରେ ସେ

ଯୁଗରେ କିଛି 'ହ୍ଲେର୍' ୧୯ଶ ରଚିତ ହୋଇଛି, ମାତ୍ର ଓଡ଼ିଆ ଭାଷାରେ ସେପରି କୌଣସି ରଚନା ସୃଷ୍ଟି ହୋଇଥିବାର ଦେଖାଯାଏ ନାହିଁ।

'ବାବାଜୀ'କୁ ଏକ ସଫଳ ପୂର୍ଣ୍ଣାଙ୍ଗ ବୋଲି ଉପଲବ୍ଧ ପ୍ରମାଣ ଭିତ୍ତିରେ ଆଲୋଚନା କରି ସାରିବା ପରେ, ଏ ବିଷୟରେ ପୂର୍ବ ପ୍ରଚଳିତ କେତେକ ଭ୍ରାନ୍ତ ମତ ହିସାବରେ ସେନ୍‌ଙ୍କ ମନ୍ତବ୍ୟ ଏଠାରେ ସୂଚିତ ହେଲା।

ସେନ୍‌ଙ୍କ ଭଳି ଜଣେ ପ୍ରତିଷ୍ଠିତ ଜ୍ଞାନୀ ବ୍ୟକ୍ତି ଏ ଧରଣର ମନ୍ତବ୍ୟ ଦେଲେ କାହିଁକି ? ତାଙ୍କ ମନ୍ତବ୍ୟ 'ଶୁଣା କଥା' ଉପରେ ପର୍ଯ୍ୟବସିତ ହୋଇଥିଲେହେଁ ସମ୍ପୂର୍ଣ୍ଣ ନିରାଧାର ଥିଲା କି, ଏ ପ୍ରଶ୍ନ ସ୍ୱତଃ ମନକୁ ଆସେ। ଉତ୍ତର ହେଉଛି—ନା। ସେନ୍ ମହାଶୟ ଓଡ଼ିଆ ନାଟକର ପ୍ରାଥମିକତା ସମ୍ପର୍କରେ ଏଠାକାର ଦୁଇ ଜଣ ପ୍ରସିଦ୍ଧ ବ୍ୟକ୍ତିଙ୍କର ମନ୍ତବ୍ୟକୁ ନିଶ୍ଚୟ ବିଚାରକୁ ନେଇଥିଲେ। ପ୍ରଥମ ମନ୍ତବ୍ୟ ଆସିଥିଲା ଦେଶପ୍ରାଣ ମଧୁସୂଦନଙ୍କଠାରୁ। ଜଗନ୍ମୋହନ ନିଶ୍ଚୟ ତାଙ୍କର ଅପରିଚିତ ନ ଥିବେ। 'ବାବାଜୀ' ନାଟକ ନିଶ୍ଚୟ ସେ ଦେଖି ନ ଥିବେ। ତେବେ ମଧୁସୂଦନ ସ୍ୱୟଂ 'ଦୀପିକା'ରେ 'ସତୀ' ନାଟକ ସମ୍ପର୍କରେ ଏକ ଚମତ୍କାର ଆଲୋଚନା ଲେଖିଥିଲେ, ଯାହାର ଗୁଣାତ୍ମକ ମାନ ଏ ଯାବତ୍ 'ସତୀ' ନାଟକ ଉପରେ ହୋଇଥିବା ଆଲୋଚନାଠାରୁ ମଧ୍ୟ ଉଚ୍ଚରେ। ଜଗନ୍ମୋହନଙ୍କୁ ଏ ଚମତ୍କାର ସାର୍ଟିଫିକେଟ୍ ଦେଇସାରିଲା ପରେ ସେ ପୁଣି ରାମଶଙ୍କରଙ୍କୁ 'Father of Oriya Drama' ବୋଲି ସମ୍ବୋଧନ କଲେ କିପରି ? ଏହା ଅନୁମାନ କରିବା କଷ୍ଟକର ନୁହେଁ, ନାଟକ ପାଇଁ ରାମଶଙ୍କରଙ୍କର ଯେଉଁ ନିଷ୍ଠା ଓ ଅଧ୍ୟବସାୟ ମଧୁସୂଦନ ଲକ୍ଷ୍ୟ କରିଥିଲେ, ମାତ୍ର ଦୁଇଖଣ୍ଡି ନାଟକ ଲେଖିଥିବା ଜଗନ୍ମୋହନଙ୍କର ତାହା ନ ଥିଲା ବୋଲି ମଧୁବାବୁଙ୍କର ବିଶ୍ୱାସ ହୋଇଥିଲା। କାରଣ ଲାଲଙ୍କର ନାଟକ ସମ୍ପର୍କୀୟ କର୍ମକ୍ଷେତ୍ର ହେଲା ମାହାଙ୍ଗା। ସେଠିକା କଥା ମଧୁବାବୁଙ୍କର ଜାଣିବାର ଉପାୟ ନାହିଁ। ରାମଶଙ୍କର ଯାହା କରୁଥିଲେ ମଧୁବାବୁଙ୍କର ଖୋଦ୍ ଆଖି ଆଗରେ କଟକ ସହରରେ। କୋଠପଦା ମଞ୍ଚରେ ଯାହା ହେଉଥିଲା, ସେସବୁର ଠିକନଖି ବିବରଣୀ 'ଦୀପିକା' ମାଧ୍ୟମରେ ତାଙ୍କ ନିକଟରେ ନିଶ୍ଚୟ ପହଞ୍ଚୁଥିବା ସର୍ବୋପରି ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ'ରେ ରାମଶଙ୍କର ସମ୍ପର୍କୀୟ ମନ୍ତବ୍ୟ। ଫକୀରମୋହନ ଲେଖିଲେ—

"ହେ ରାମଶଙ୍କର ମୋର ମାନୁଛି ମନକୁ,
ହୋଇପାର ଖର ତୁମ୍ଭେ ଗଉଡ଼ ପଛକୁ,
ଓଡ଼ିଆ ନାଟକ ଆଉ ନଭେଲର ଲେଖା,
ପ୍ରଥମରେ ତୁମ୍ଭଠାରେ ଗଲାସିନା ଦେଖା।"

ଏହା କେବଳ ସେକାଳରେ ନୁହେଁ, ଦୀର୍ଘକାଳ ଧରି ବହୁ ପାଠକଙ୍କୁ ବିଭ୍ରାନ୍ତ କରିଛି । ରାମଶଙ୍କର ପ୍ରଥମ ଓଡ଼ିଆ ନାଟ୍ୟକାର ତ ନୁହନ୍ତି । ପ୍ରଥମ ଔପନ୍ୟାସିକ ମଧ୍ୟ ନୁହନ୍ତି, ଯଦିଓ ପ୍ରଥମେ ସେ ଉପନ୍ୟାସ ଲେଖିବାକୁ ଆରମ୍ଭ କରିଥିଲେ ଏବଂ ଦୁର୍ଭାଗ୍ୟରୁ ତାହା ଅପୂର୍ଣ୍ଣ ରହିଗଲା । ତେବେ ପ୍ରଚାରର ମାଧ୍ୟମରେ ଦୀର୍ଘକାଳ ଧରି ଏ ଉଭୟ ଗୌରବ ତାଙ୍କୁ ଅର୍ପଣ କରିଗଲା ।

'ବବାଜି' ଗୁରୁ ଅଙ୍କର ଏକ ଆଧୁନିକ ନାଟକ ଏବଂ ଏହାର ନାଟ୍ୟକାର ଜଗନ୍ମୋହନ ଓଡ଼ିଆ ଭାଷାର ପ୍ରଥମ ନାଟ୍ୟକାର—ଏ ପ୍ରସଙ୍ଗରେ କେବଳ ଏତିକି କହି ଆମେ ଏ ପ୍ରସଙ୍ଗ ଶେଷ କରୁଛୁ ।

### ବାବାଜୀ ନାଟକ ଓ ଆଧୁନିକତା—

ଆଧୁନିକ ଓଡ଼ିଆ ନାଟକ ହେଉଛି ଓଡ଼ିଶାରେ ପାଶ୍ଚାତ୍ୟ ସଂସର୍ଗର ଅମୃତମୟ ଫଳ । ଯଥାର୍ଥରେ ଦେଖିବାକୁ ଗଲେ ଓଡ଼ିଶାର ପାରମ୍ପରିକ ଲୋକନାଟ୍ୟ ଧାରା ସହ ଏହାର ସମ୍ପର୍କ ସେତେ ଦୃଢ଼ ନୁହେଁ । ଲୋକନାଟକର ସଙ୍ଗୀତମୟତା ଏଥିରେ ପୂରାପୂରି ଅନୁପସ୍ଥିତ । ଅଧ୍ୟାପକ ପ୍ରିୟରଞ୍ଜନ ଏହି କାରଣରୁ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି, "There was no dramatic literature in ancient Oriya in the modern sense" (Modern Oriya Literature —P. 105) ଦେଖିବାକୁ ଗଲେ, ଭାରତବର୍ଷର ବିଭିନ୍ନ ପ୍ରାଦେଶିକ ଭାଷାରେ ଆଧୁନିକ ନାଟକ ସୃଷ୍ଟି ହୋଇଛି ପାଶ୍ଚାତ୍ୟ ପ୍ରଭାବରେ । ଭାରତର ପ୍ରାଚୀନ ସଂସ୍କୃତ ନାଟକ ଏବଂ ଲୋକନାଟକଠାରୁ ସମ୍ପର୍କ ଛିନ୍ନ କରିବା ପରେ ହିଁ ଏହା ସମ୍ଭବ ହୋଇଛି । ଡଃ ନଟବର ସାମନ୍ତରାୟ ଅଧ୍ୟାପକ ସେନ୍‌ଙ୍କର ମନ୍ତବ୍ୟର ପ୍ରତିଧ୍ୱନି କରି କହନ୍ତି, "ଓଡ଼ିଆ ସାହିତ୍ୟରେ ନାଟକ ରଚନା ସମ୍ପୂର୍ଣ୍ଣ ଏକ ନୂତନ ଉଦ୍ୟମ । ଏହା ତଦାନୀନ୍ତନ ଆଧୁନିକ ବଙ୍ଗଳା ଓ ଇଂରାଜୀ ନାଟ୍ୟ ସାହିତ୍ୟର ପ୍ରଭାବରେ ସୃଷ୍ଟି ଓ ପରିପୁଷ୍ଟ । ଲୀଳା ଓ ଯାତ୍ରାର ଲୋକରୁଚି ଅନୁକୂଳ କେତେକ ଉପାଦାନ ଏଥିରେ ଗର୍ଭିଭୂତ ହୋଇଥିଲେ ହେଁ ଆଧୁନିକ ଓଡ଼ିଆ ନାଟକ ଏ ଦେଶର ପରମ୍ପରା ଗତ ଲୀଳା ବା ଯାତ୍ରାର ସର୍ବଶେଷ ବିବର୍ତ୍ତନ ନୁହେଁ । × × ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ ଆଧୁନିକ ସାହିତ୍ୟର ଯେଉଁସବୁ ବିଶିଷ୍ଟ ବିଭାଗ ନୂତନ ରୂପରେ ଏ ଦେଶରେ ପ୍ରଥମେ ଜନ୍ମଲାଭ କରିଥିଲେ, ନାଟ୍ୟ ସାହିତ୍ୟ ହେଉଛି, ସେମାନଙ୍କ ମଧ୍ୟରୁ ଅନ୍ୟତମ" (ଓଡ଼ିଆ ସାହିତ୍ୟର ଇତିହାସ-ପୃ. ୪୦୯)

ଓଡ଼ିଆ ନାଟକ ପାଇଁ ପାଶ୍ଚାତ୍ୟ ସଂସର୍ଗର ମୁଖ୍ୟ ମାଧ୍ୟମ ଥିଲା ବଙ୍ଗଳା-ନାଟକ । ନ'ଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାରେ ହଠାତ୍ କେତେ ସ୍କୁଲ ପ୍ରତିଷ୍ଠିତ ହୋଇଥିବାର

ଦେଖିବାକୁ ମିଳୁଛି । ଶିକ୍ଷାର କ୍ରମିକ ପ୍ରସାର, ଗମନାଗମନ ବ୍ୟବସ୍ଥାର ଉନ୍ନତି, ଓଡ଼ିଶାର ବାହାରର ସନ୍ନିକଟତା, ମୁଦ୍ରଣ ଯନ୍ତ୍ରର ସ୍ଥାପନ ଏବଂ ପତ୍ରପତ୍ରିକାର ଆତ୍ମପ୍ରକାଶ ଫଳରେ ଏହି ପରିବର୍ତ୍ତନ ସମ୍ଭବ ହୋଇପାରିଥିଲା । ଦୁର୍ଭିକ୍ଷ ଗର୍ଭରୁ ଯେଉଁ ନୂତନ ମଧ୍ୟବିତ୍ତଗୋଷ୍ଠୀ ଆତ୍ମପ୍ରକାଶ କଲେ ସେମାନେ ହେଲେ ଏ ପରିବର୍ତ୍ତନରେ ବାହକ । ପାଶ୍ଚାତ୍ୟ ସଂସ୍କୃତି ସହିତ ଏମାନଙ୍କର ନିବିଡ଼ ଯୋଗାଯୋଗ ହେତୁ ପରିବର୍ତ୍ତନ ସେହି ମାର୍ଗରେ ପ୍ରଥମେ ପ୍ରବେଶ କଲା । ଏହି ମଧ୍ୟବିତ୍ତ ଗୋଷ୍ଠୀ ସାହିତ୍ୟ ସୃଷ୍ଟି କରୁଥିଲେ । ସେହିମାନେ ତାହାର ଉପଭୋକ୍ତା ଏବଂ ଆଲୋଚକ ମଧ୍ୟ ଥିଲେ । ଏହିମାନଙ୍କ ସଚେତନତା ସମାଜ ପାଇଁ ଶୁଭପ୍ରଦ ହୋଇଥିଲା । କାରଣ ସମାଜ ଜୀବନର ଯେତେକ ଦୋଷତ୍ରୁଟି, ଏହିମାନେ ହିଁ ତାହାର ନିରାକରଣ ନିମନ୍ତେ ସଜ୍ଞବଦ୍ଧ, ଏବଂ ବିଶେଷ କରି ସାହିତ୍ୟ ମାଧ୍ୟମରେ ତାହାର ନିରାକରଣ ନିମନ୍ତେ ଉଦ୍ୟମ ଆରମ୍ଭ କରି ଦେଇଥିଲେ ।

'ବାବାଜୀ' ନାଟକ ହେଉଛି, ଏହିଭଳି ଚିନ୍ତା ଓ ଚେତନାର ପ୍ରସୂତି । ଧର୍ମ ଥିଲା, ସେ କାଳ ସମାଜର ସବୁଠୁଁ ସ୍ପର୍ଶକାତର ଅଙ୍ଗ । ଏ କ୍ଷେତ୍ରର ଅଜସ୍ର ଦୋଷ-ତ୍ରୁଟିକୁ ଧର୍ମଭୀରୁ ଜନତା ଅନୁଭବ କରୁଥିଲେ, ଆଖିରେ ଦେଖୁଥିଲେ ମଧ୍ୟ ଭୟରେ ତା' ବିରୁଦ୍ଧରେ ପଦେ ହେଲେ ଉଚ୍ଚାରଣ କରୁ ନଥିଲେ । ଜଗନ୍ମୋହନ ନାଟକ ମାଧ୍ୟମରେ ପ୍ରଥମେ ଧର୍ମୀୟ ଭଣ୍ଡାମି ବିରୁଦ୍ଧରେ ଜନସଚେତନତା ସୃଷ୍ଟି ନିମନ୍ତେ ଚେଷ୍ଟା କରିଥିଲେ । 'ବାବାଜୀ' ନାଟକ ତେଣୁ ନାଟ୍ୟକାରଙ୍କ ଦୁଃସାହସିକ ଉଦ୍ୟମର ଆଦ୍ୟ-ଫଳ ବୋଲି କୁହାଯାଇପାରେ । ଯୁଗ ଯୁଗ ଧରି ଏ ଦେଶର ଜନତା ଧର୍ମ-ସଂକ୍ରାନ୍ତୀୟ ସମସ୍ତ ବ୍ୟାପାରକୁ ଭୟର ସହିତ ଶ୍ରଦ୍ଧା ଓ ସମ୍ମାନ ଜଣାଇବାରେ ଅଭ୍ୟସ୍ତ ଥିଲେ । ପାଶ୍ଚାତ୍ୟ ସଂସ୍କୃତିର ସମ୍ପର୍କରେ ଆସିଲା ପରେ ଶିକ୍ଷିତ ଗୋଷ୍ଠୀ ମଧ୍ୟରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଘଟିଲା । ଶ୍ରଦ୍ଧାପୂର୍ଣ୍ଣ ବିଶ୍ୱାସ ବଦଳରେ ସନ୍ଦେହାସ୍ପଦ କ୍ଷେତ୍ରରେ କାର୍ଯ୍ୟ କାରଣ ଖୋଜିବାର ଏକ ପ୍ରବୃତ୍ତି ଜନ୍ମନେଲା । ଏହି ମଧ୍ୟବିତ୍ତ ଶିକ୍ଷିତ ଗୋଷ୍ଠୀର ପ୍ରତିନିଧି ହେଉଛନ୍ତି ଜଗନ୍ମୋହନ । ବାବାଜୀ ନାଟକର ଅନ୍ତଃସ୍ୱରରେ ଗୋଟିଏ ପରିଚ୍ଛନ୍ନ ବୈଜ୍ଞାନିକ ମନର ସୁସ୍ପଷ୍ଟ ସ୍ଥିତି ପଦେ ପଦେ ଅନୁଭୂତ ହୁଏ । ସେ ଯୁଗରେ ଏହା ହିଁ ଥିଲା ଆଧୁନିକତା, ଯାହା ସମସ୍ତର ଯଥାର୍ଥ ସ୍ୱରଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । 'ବାବାଜୀ' ନାଟକକୁ ତେଣୁ ଆଧୁନିକତାର ପ୍ରଥମ ଭାର୍ତ୍ତାବହ ରୂପରେ ଗ୍ରହଣ କରିବାରେ କୌଣସି ଅସୁବିଧା ନାହିଁ ।

'ବାବାଜୀ' ନାଟକର ସମୀକ୍ଷା :—ବଙ୍ଗଳାର ପ୍ରସିଦ୍ଧ ନାଟ୍ୟକାର ଦୀନବନ୍ଧୁ ମିତ୍ର 'ନୀଳ ଦର୍ପଣ' (୧୮୬୦) ନାମକ ଏକ ଯୁଗାନ୍ତକାରୀ ନାଟକ ଲେଖି ସେ ସମୟରେ ଚହଳ ସୃଷ୍ଟି କରିଥିଲେ । ଏହାଙ୍କର ଲୀଳାବତୀ (୧୮୬୭) ନାମକ ଏକ ନାଟକ ଥିଲା । 'ବାବାଜୀ' ନାଟକ ଏହାଦ୍ୱାରା ପ୍ରଭାବିତ ଏଭଳିକି 'ବାବାଜୀ'

'ନୀଳାବତୀ'ର ଏକ ବ୍ୟଙ୍ଗକାବ୍ୟ ଅନୁକୃତ ବୋଲି ସେ ସମୟରେ ମନ୍ତବ୍ୟ ଦିଆଯାଇ-
ଥିଲା । ଏଥିରେ କୌଣସି ସଙ୍କୋଚ ନ ଥିବାର ମଧ୍ୟ ସେ କାଳର ଜଣେ ପତ୍ର ପ୍ରେରକ
ପ୍ରମାଣ କରିଦେଲେ । ଡକ୍ଟର ନଟବର ସାମନ୍ତରାୟ, ତାଙ୍କର ଓଡ଼ିଆ ସାହିତ୍ୟର
ଇତିହାସ (ପୃ. ୪୧୨)ରେ ଉଭୟ ନାଟକ ମଧ୍ୟରେ ଥିବା ସାମଞ୍ଜସ୍ୟର ଏକ ତୁଳନାତ୍ମକ
ଆଲୋଚନା କରୁଛନ୍ତି । ତାଙ୍କ ମତରେ ଉଭୟ ନାଟକ ମଧ୍ୟରେ ଥିବା 'କଥାବସ୍ତୁ'ରେ
'ବାବାଜି'ଙ୍କର ଯେଉଁ ନେତୃତ୍ୱ ଏବଂ ଚମ୍ପା (ନୀଳାବତୀ)ର ସନ୍ନ୍ୟାସୀ ବେଶ ମୂଳକଥା-
ବସ୍ତୁକୁ ଯେଉଁଭଳି ନିୟନ୍ତ୍ରଣ କରିଛି, ତହିଁରେ ମିଶ୍ରଙ୍କ 'ନୀଳାବତୀ' ଦ୍ୱାରା ପ୍ରଭାବିତ
ହୋଇଥିବା ସମ୍ଭବପର । ଜଗନ୍ମୋହନ ଜଣେ ସଂସ୍କୃତ ସଚେତନ ବ୍ୟକ୍ତି ଥିଲେ । ତେଣୁ
ଦୀନବନ୍ଧୁ ମିତ୍ରଙ୍କର ନାଟକଗୁଡ଼ିକ ସହ ତାଙ୍କର ପରିଚୟ ଥିବା କଥା ବିଶ୍ୱାସଯୋଗ୍ୟ ।
ବିଶେଷ କରି ତାଙ୍କର ଦ୍ୱିତୀୟ ନାଟକ 'ସତୀ'ର ପରିକଳ୍ପନାରେ 'ନୀଳ ଦର୍ପଣ'
ନାଟକର ଯେଉଁ ସ୍ପଷ୍ଟ ଛାୟା ଦେଖିବାକୁ ମିଳୁଛି ସେଥିରୁ ଏହାହିଁ ପ୍ରମାଣିତ ହେଉଛି
ଯେ, ଦୀନବନ୍ଧୁ ମିତ୍ର, ମିଶ୍ରଙ୍କ ପାଇଁ ସମ୍ପୂର୍ଣ୍ଣ ଅପରିଚିତ ନଥିଲେ । ପୁଣି ସେ ଯୁଗରେ
'ନୀଳାବତୀ' କଟକରେ ଅଭିନୀତ ହୋଇଥିବାର ସମ୍ବାଦ ମଧ୍ୟ ଦେଖିବାକୁ ମିଳୁଛି ।
'ନୀଳାବତୀ' ନାଟକ ଦେଖିବାର ନ ହେଲେ ପଢ଼ିବାର ସୁଯୋଗ ଅବଶ୍ୟ ପାଇଥିବେ ।
ତେବେ ମୂଳ କଳ୍ପନା 'ନୀଳାବତୀ'କୁ ଛଦ୍ମ ସନ୍ନ୍ୟାସୀ ବେଶରେ ଉପସ୍ଥାପିତ କରାଇ
ତାହାଦ୍ୱାରା ସମସ୍ତ ଘଟଣାର ନିୟନ୍ତ୍ରଣ କରାଇବା ଯାହା 'ନୀଳାବତୀ' ନାଟକରେ କରା-
ଯାଇଛି, ତାହା 'ବାବାଜି' ନାଟକରେ ନାହିଁ । 'ବାବାଜି' ଏଠାରେ ମୂଳରୁ ଶେଷ
ପର୍ଯ୍ୟନ୍ତ ନିଜର ପ୍ରକୃତ ରୂପରେ ହିଁ ଅଛନ୍ତି । ତେବେ ଉଭୟ 'ବାବାଜି'ଙ୍କର କାର୍ଯ୍ୟ-
କଳାପରେ ସାମଞ୍ଜସ୍ୟ ହେଉଛି । ସେଥିରୁ କେବଳ ଏତିକି ଜଣାଯାଉଛି ଯେ, ମିଶ୍ର
ମହାଶୟ ମିତ୍ର ନାଟକାବଳୀ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲେ ।

**କଥାବସ୍ତୁ :—**

ଏକ ଯଥାର୍ଥ ଧର୍ମପ୍ରାଣ 'ବାବାଜି'ଙ୍କୁ ନେଇ ଏହାର କଥାବସ୍ତୁ ପରିକଳ୍ପିତ ।
ତେଣୁ ଏହି ସଦାଶୟ ସାଧୁଙ୍କୁ କେନ୍ଦ୍ର କରି ଘଟଣାସମୂହ ଆବର୍ତ୍ତିତ ହୋଇଛି ।
କଥାବସ୍ତୁର ରୂପ ଅତ୍ୟନ୍ତ ସଂକ୍ଷିପ୍ତ । ବସ୍ତୁତଃ, କେତୋଟି ଘଟଣାକୁ ସଂଯୋଗ ସୂତ୍ରଦ୍ୱାରା
କରାଯାଇ ଏହାର କଥାବସ୍ତୁ ପ୍ରସ୍ତୁତ ହୋଇଛି । ଭିକ୍ଷାଶୀ ବାବାଜି ଧର୍ମଧ୍ୱଜୀ ମଦ୍ୟପ
ଗୃହସ୍ଥ ସୁବଳ ପଟ୍ଟନାୟକଙ୍କ ଗୃହରେ ଭୋଜନ ଭିକ୍ଷା କରନ୍ତି । ବାବୁ ନିଜର ପୂଜାହାରୀ
ଆନନ୍ଦକୁ ଭୋଜନ ବ୍ୟବସ୍ଥା ନିମନ୍ତେ ଆଦେଶ ଦିଅନ୍ତି । ଧୂର୍ତ୍ତ ଆନନ୍ଦ ଭୋଜନ ବ୍ୟବସ୍ଥା ତ
କରେନାହିଁ । ହାଣ୍ଡି ଭିତରେ ଜୀଅନ୍ତା କୁକୁଡ଼ାଟାଏ ଘୋଡ଼ାଇ ସାଧୁ ଦର୍ଶନରେ ମୃତ
କୁକୁଡ଼ା ଜୀବନ୍ତ ହୋଇଗଲା ବୋଲି ବାବାଜୀଙ୍କୁ ବ୍ୟଙ୍ଗ କରେ । ବାବାଜି ଦୁଃଖିତ ହୋଇ
ଶେଷରେ ଆନନ୍ଦ ଅତ୍ୟନ୍ତ ଅନୁତପ୍ତ ହୁଏ । ବାବାଜି ଏବେ ଦେବଦତ୍ତୀ ଘରେ

ଉପସ୍ଥିତ ହୋଇ ଭୋଜନ ପ୍ରାର୍ଥନା କରନ୍ତି । ଅନ୍ୟାୟ ମଣ୍ଡିତ ମଠାଧୀଶ, ଅମ୍ବିକାଙ୍କ ପ୍ରକାଶ୍ୟ ଲୀଳା ଅବଲୋକନ କରନ୍ତି । ତାଙ୍କପାଇଁ ମଠର ଅନୁଗାମୀ ସେବକମାନଙ୍କର ମନକଷ୍ଟ । ମଠ ଅଧିକାରୀ ବା ମଠାଧୀଶଙ୍କ ହୃଦୟ ଦ୍ରବେନାହିଁ । ସେଠାରୁ ମଧ୍ୟ ତାଙ୍କୁ ବିତାଡ଼ିତ ହେବାକୁ ପଡ଼େ । ଅନ୍ୟାୟକାରୀଙ୍କ ପ୍ରତି ବାବାଜୀଙ୍କ ହୃଦୟରେ କୌଣସି ଅସୂୟା ଭାବ ସୃଷ୍ଟି ହୁଏ ନାହିଁ । ଏହାପରେ ଗ୍ରାମୋପକଣ୍ଠସ୍ଥ ଏକ ଉପବନରେ ବିଶ୍ରାମରତ ବାବାଜୀଙ୍କୁ ଦେଖିବାକୁ ମିଳେ, ଯେଉଁଠି ତାଙ୍କର ଶେଷ ସମ୍ବଳ ମୃଗ ଛାଲଟିକୁ ମଧ୍ୟ ଚୋର ନେଇଯାଏ । ବାବାଜୀ ସ୍ୱଚ୍ଛ ମନରେ ସେଇଟିକୁ ଚୋରକୁ ଦାନ କରିଦିଅନ୍ତି । ଏଇଠି ଦୁଇଜଣ ଦେହୋପଜୀବିନୀରାଧୀ ଏବଂ ଜେମାଙ୍କ ସହ ତାଙ୍କର ସାକ୍ଷାତ୍ ହୁଏ । ବାବାଜୀ ମୃତ ଶରୀରରେ ମଧ୍ୟ ପ୍ରାଣ ସଞ୍ଚାର କରିବାର ଅଲୌକିକ ଶକ୍ତି ରଖନ୍ତି—ଏଇଭଳି ଏକ ଜନରବ (ଯାହା ପୂଜାରୀ ଆନନ୍ଦ ପଣ୍ଡାଦ୍ୱାରା ସୃଷ୍ଟି) ଶୁଣି ସେମାନେ ବାବାଜୀଙ୍କୁ ସାକ୍ଷାତ କରିବାକୁ ଆସନ୍ତି । ବାବାଜୀ ସେମାନଙ୍କର ଭୁଲ ଧାରଣା ଭାଙ୍ଗନ୍ତି ଏବଂ ଭୂତ, ପ୍ରେତ, ଡାଆଣୀ, ଚିରଗୁଣୀ ପ୍ରଭୃତି ଅପଶକ୍ତି-ମାନଙ୍କର ସ୍ଥିତି ଯେ, ସୁବିଧାବାଦୀ ଗୋଷ୍ଠୀର ଏକ ମିଥ୍ୟା କଳ୍ପନା, ଏହା ସେମାନଙ୍କୁ ପ୍ରାଞ୍ଜଳ ଭାବରେ ବୁଝାଇ ଦିଅନ୍ତି ।

ଏହାପରେ ବାବାଜୀଙ୍କ ପାଖକୁ ଆସନ୍ତି ଶିବମିଶ୍ର ଓ ଜେମ୍ସ ଦଲାଇ । ଜଣେ ହିନ୍ଦୁ, ଅନ୍ୟଜଣକ ଖ୍ରୀଷ୍ଟିଆନ୍ । ସେମାନେ ମଧ୍ୟ ବାବାଜୀଙ୍କ ଅଲୌକିକ ଶକ୍ତି ବିଷୟରେ ଶୁଣି ନିଜର ସମସ୍ୟା ନେଇ ତାଙ୍କ ପାଖକୁ ଆସିଛନ୍ତି । ଗୁଣିଗାରେଡ଼ି, ହାଟଚମଟ, ଭଣ୍ଡପିଶାଚୀ ବିଦ୍ୟା ଏସବୁ ଯେ କେବଳ କେତେକ ଧୂର୍ତ୍ତ ବ୍ୟବସାୟୀମାନଙ୍କର ଚକ୍ରାନ୍ତ, ବାବାଜୀ ଏହା ସେମାନଙ୍କୁ ବୁଝାଇ ଦିଅନ୍ତି । ଧର୍ମ ସମ୍ପର୍କୀୟ ଉଦାରତା, କୁସଂସ୍କାର, ଅନ୍ଧବିଶ୍ୱାସର ଅସାରତା ସମ୍ପର୍କରେ ଉପଦେଶ ଦେଇ ସେମାନଙ୍କୁ ବିଦାୟ ଦିଅନ୍ତି । ଶେଷରେ ଆସେ ଅନୁତପ୍ତ ଆନନ୍ଦ ପଣ୍ଡା ପୂଜାରୀ । ସେ ଜଣେ ଗୁଣିଆ । ଭୂତ, ଡାଆଣୀ ଛଡ଼ାଇ ଗ୍ରାମୀଣ ନିରୀହ ଲୋକଙ୍କର ସରଳତାର ସୁଯୋଗରେ ସେ ନିଜର ବ୍ୟବସାୟ ଚଳାଏ । ବାବାଜୀ ଆଲୋଚନା ମାଧ୍ୟମରେ ତା ବ୍ୟବସାୟର ସମସ୍ତ ଗୁପ୍ତ ତଥ୍ୟ ବାହାର କରନ୍ତି । ଗ୍ରାମବାସୀଙ୍କୁ ଏଭଳି ଠକିବାଦ୍ୱାରା ସେ ଯେ କେତେ ଅନ୍ୟାୟ କରୁଛି ତାହା ତାକୁ ବୁଝାଇଦିଅନ୍ତି । ଅନ୍ୟାୟ ଅର୍ଥ ଉପାର୍ଜନ, ଆତ୍ମାକୁ କଳୁଷିତ କରେ ଏବଂ ସେଥିରୁ ମହା ଅନର୍ଥ ଜାତହୁଏ । ପରିଶ୍ରମ ଓ ଯତ୍ନରେ ସଦୁପାୟ ସାହାଯ୍ୟରେ ଯଥେଷ୍ଟ ଅର୍ଥ ଅର୍ଜନ କରାଯାଇ ପାରେ ବୋଲି ତାହାକୁ ବୁଝାଇ ଦିଅନ୍ତି । ସଂକ୍ଷେପରେ ଏହାହିଁ 'ବାବାଜୀ' ନାଟକର କଥାବସ୍ତୁ ।

ସମଗ୍ର କଥାବସ୍ତୁଟି ଏକମୁଖୀ ଏବଂ ଏଥିରେ କୌଣସି ଉପ-କଥାବସ୍ତୁ (Sub-plot)ର ପରିକଳ୍ପନା କରାଯାଇ ନାହିଁ । ବାବାଜୀଙ୍କର ମହତ୍ତ୍ୱ ପ୍ରତିପାଦନ

କ୍ରମରେ କେତୋଟି ଘଟଣାର ବର୍ଣ୍ଣନା କରାଯାଇଛି ମାତ୍ର । ପରିଣାମରେ ଘଟଣାର ତୀବ୍ର ହୋଇ ଦ୍ରୁତ ପରିଣତି ଆଡ଼କୁ ଆଗେଇ ଯାଉଛି । ମୂଳଘଟଣା ସହ ଅନେକ ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଘଟଣାର ସନ୍ନିବେଶ କରାଯାଇ ମୂଳକାହାଣୀ ସହ ସେ ସବୁର ସମ୍ପର୍କକୁ ଦୃଢ଼ ଏବଂ ଅବିଚ୍ଛିନ୍ନ କରାଯାଇଛି । ଫଳରେ କାହାଣୀର ସାମୂହିକ ପ୍ରଭାବ ଉଲ୍ଲେଖଯୋଗ୍ୟ ହୋଇପାରିଛି ।

ସାହିତ୍ୟ ତତ୍ତ୍ୱବିତ୍ ଆରିଷ୍ଟଟଲ କଥାବସ୍ତୁକୁ ନାଟକର ଆତ୍ମା ବୋଲି କହନ୍ତି । ଉତ୍କଣ୍ଠା ଏବଂ କୌତୂହଳ ଏ କାହାଣୀର ବିଶେଷତ୍ୱ ବୋଲି ତାଙ୍କର ମତ । ଏଥିପାଇଁ ନାଟ୍ୟକାରଙ୍କୁ ବିଶେଷ କୌଶଳ ପ୍ରୟୋଗ କରିବାକୁ ପଡ଼ିଥାଏ । ଜଣେ ଅଭୁକ୍ତ ସାଧୁ-ସନ୍ନ୍ୟାସୀ ଭୋଜନ କ୍ରମରେ ତାଙ୍କର ପ୍ରତ୍ୟାଶା ଏବଂ ଏହି ପ୍ରତ୍ୟାଶା ପରିପୂର୍ତ୍ତି କ୍ରମରେ ତାଙ୍କର ଉଦ୍ୟମ, ଏଇ ଦୁଇ ଘଟଣାର ଅନ୍ତର୍ବର୍ତ୍ତୀ ସମସ୍ତକୁ ନାଟ୍ୟକାର ଦର୍ଶକମାନଙ୍କର ଉତ୍କଣ୍ଠା ବୃଦ୍ଧିର କାର୍ଯ୍ୟରେ ଲଗାଇଛନ୍ତି । ମଠରୁ ନିରାଶହୋଇ ଫେରିବା ପରେ ବାବାଜୀଙ୍କର ପରବର୍ତ୍ତୀ ପଦକ୍ଷେପ ସମ୍ପର୍କରେ ମଧ୍ୟ ଦର୍ଶକମାନଙ୍କର ଉତ୍କଣ୍ଠା ବଜାୟ ରହିଛି । ହଠାତ୍ ମଝିରୁ ଝାମ୍ପି ନେଉଥିବା କୁକୁଡ଼ା ବାହାରକରି ନାଟ୍ୟକାର ଦର୍ଶକମାନଙ୍କ ମଧ୍ୟରେ ଚମକ ସୃଷ୍ଟି କରିଛନ୍ତି ଏବଂ ଭୂତ ଡରରେ ଅଚେତ ହୋଇ ପଡ଼ିଥିବା ଗିରୀ ମାଧ୍ୟମରେ ମଧ୍ୟ ସେଇ ଆକସ୍ମିକତା ସୃଷ୍ଟିର ଉଦ୍ୟମ ହୋଇଛି ! କାହାଣୀର ଧାରା ଏଠାରେ ଏକମୁଖୀ ଏବଂ ଅବାଧ । ଏହାକୁହିଁ କାହାଣୀର 'ସରଳ ରୂପ' ବୋଲି ଆଲୋଚକମାନେ କହନ୍ତି । ଚାରୋଟି ଅଙ୍କ (ଏଥିରେ କୌଣସି ଦୃଶ୍ୟ ପରିକଳ୍ପନା ନାହିଁ) ମାଧ୍ୟମରେ ନାଟ୍ୟକାର କାହାଣୀକୁ ବିଭାଜିତ କରିଛନ୍ତି । ପ୍ରଥମ ଅଙ୍କରେ ସୁବଳ ପଟ୍ଟନାୟକଙ୍କ ଗୃହରେ ବାବାଜୀଙ୍କର ଭୋଜନ ପ୍ରାର୍ଥନା, ଭୋଜନ ବ୍ୟବସ୍ଥା କ୍ରମରେ ବାବୁଙ୍କର ଆଦେଶଦାନ ଓ ସ୍ୱୟଂ ଦଶାରେ ହତଜ୍ଞାନ ହୋଇପଡ଼ିବା ପ୍ରଭୃତି ବର୍ଣ୍ଣନା ହୋଇଛି ନାଟ୍ୟ କାହାଣୀର ପ୍ରାରମ୍ଭ ପର୍ବ । ଏଥିରେ ଜଣେ କ୍ଷୁଧାର୍ତ୍ତ ବ୍ୟକ୍ତି ଓ ତାର ପରିସ୍ଥିତି ପ୍ରଦର୍ଶନ ମାଧ୍ୟମରେ ନାଟ୍ୟକାର ସଂଘର୍ଷର ପ୍ରଥମ ସୂଚନା ଦେଇଛନ୍ତି । ଦ୍ୱିତୀୟ ଅଙ୍କରେ ପୂଜାରୀ ଆନନ୍ଦ ପଣ୍ଡାର ଧୂର୍ତ୍ତତା ଓ ପ୍ରବଞ୍ଚନା ଦ୍ୱାରା ଏହି ସଂଘର୍ଷ ପରିବ୍ୟାପ୍ତ ହୋଇଛି । ତୃତୀୟ ଅଙ୍କରେ ବାବାଜୀ ମଠରେ ଉପସ୍ଥିତ ହେଉଛନ୍ତି ଏବଂ ସେଠାରେ ମଠାଧୀଶଙ୍କ କାର୍ଯ୍ୟକଳାପରେ ବାବାଜୀଙ୍କର ଘୋର ନୈରାଶ୍ୟ ଦ୍ୱାରା ସଂଘର୍ଷର ରୂପ ଅଧିକ ତୀବ୍ର ହୋଇଛି । ଏମିତି ଦେଖିବାକୁ ଗଲେ କଥାବସ୍ତୁର କୌଣସି ଶୀର୍ଷବିନ୍ଦୁ ନାହିଁ । ଏହା ସଂଗତିପୂର୍ଣ୍ଣ କେତେ ଗୁଡ଼ିଏ ଘଟଣାର ବର୍ଣ୍ଣନା ମାତ୍ର । ତଥାପି ଏହି ତୃତୀୟ ଅଙ୍କରେ ହିଁ ବାବାଜୀଙ୍କ ପ୍ରତ୍ୟାଶାର ଚରମ ପରିଣତି ଦେଖାଇ ଦିଆଯାଇ ଥିବାରୁ ଏହାକୁ କଥାବସ୍ତୁର ଶୀର୍ଷବିନ୍ଦୁ ରୂପେ ଗ୍ରହଣ କରି ନିଆଯାଇ ପାରେ । କାରଣ ଶେଷ ଚତୁର୍ଥ ଅଙ୍କରେ ଦେଖିବାକୁ ମିଳେ କେବଳ ପଥଭ୍ରଷ୍ଟ କେତେଜଣ ନରନାରୀଙ୍କୁ

ବାବାଜୀଙ୍କର ଉପଦେଶ । ନାଟକର ଶେଷ ଅଂଶରେ ଆନନ୍ଦ ପଣ୍ଡାଙ୍କୁ ପୁନର୍ବାର ମଞ୍ଚକୁ ଅଣାଯାଇ ତାହାର ବ୍ୟବସାୟିକ କୌଶଳର ସ୍ୱରୂପ ଉଦ୍‌ଘାଟନ ଏବଂ ଅନୁତାପ ମାଧ୍ୟମରେ ପୁନର୍ବାର ଏକ ଚମତ୍କାରିତା ସୃଷ୍ଟିର ଉଦ୍ୟମ ହୋଇଛି । ତେବେ ତୃତୀୟଅଙ୍କ ଶେଷ ପରେ ବସ୍ତୁତଃ କଥାବସ୍ତୁରେ ସେଭଳି କୌଣସି ନୂତନ ମୋଡ଼ ସୃଷ୍ଟି ହୋଇନାହିଁ । ତେବେ ଚତୁର୍ଥଟି ଅଙ୍କରେ ବିଭକ୍ତ ମୂଳ କଥାବସ୍ତୁର ଗତି ଯେ ଆମୂଳ ଅବ୍ୟାହତ ରହିଛି, ଏହା କୁହାଯାଇପାରେ ।

ଆଲୋଚକ ନିକଲ୍ (Nicoll)ଙ୍କ ମତରେ A drama is never really a story told to an audience, it is a story interpreted before an audience by a body actors". (The Theory of Drama pp. 51) ଏ ଦୃଷ୍ଟିରୁ ବିଚାର କରିବାକୁ ଗଲେ ବାବାଜୀ ନାଟକର ପ୍ରଣେତା ଯେ ଦର୍ଶକମାନଙ୍କୁ ସେ ଯୁଗର ଲୋକନାଟ୍ୟରେ ପ୍ରଦର୍ଶିତ ଏକ ରସାଳ କାହାଣୀର ପ୍ରଦର୍ଶନ ଦ୍ୱାରା ଚମତ୍କୃତ କରିବାକୁ ଚାହିଁ ନ ଥିଲେ, ବରଂ ଏକ ନିର୍ଦ୍ଦିଷ୍ଟ ଭାବର ବିଶ୍ଳେଷଣ ହିଁ ତାଙ୍କର ମୂଳ ଲକ୍ଷ୍ୟ ଥିଲା, ଏହା କହିଲେ ମଧ୍ୟ ଚଳିବ । କାହାଣୀରେ ରୋମାଞ୍ଚ ସୃଷ୍ଟିକାରୀ କୌଣସି ଚକ୍ରାନ୍ତ, ହତ୍ୟା, ପ୍ରେମ, ପ୍ରତାରଣା, ଲୁଣ୍ଠନ, ଗୋପନ ଷଡ଼ଯନ୍ତ୍ର, ଅପହରଣ, ଦ୍ୱନ୍ଦ୍ୱଯୁଦ୍ଧ, ଅଶ୍ରୁ ବିଳାପ ଇତ୍ୟାଦିର ବର୍ଣ୍ଣନା ନାହିଁ । ଏଥିରେ ଅଛି କେବଳ ଜଣେ ଛଦ୍ମ-ଭିକ୍ଷାରୀ ବାବାଜୀର ଦୁର୍ଭୋଗର ଏକ ଅତି ସାଧାରଣ ବର୍ଣ୍ଣନା । କେତୋଟି ଦ୍ୱନ୍ଦ୍ୱ ଗର୍ଭିତ ମୁହୂର୍ତ୍ତ ସୃଷ୍ଟିକରି ନାଟ୍ୟକାର ଏହାକୁ ଆକର୍ଷଣୀୟତା ପ୍ରଦାନ କରିବା ନିମନ୍ତେ ଉଦ୍ୟମ କରିଛନ୍ତି ମାତ୍ର । ଏହା ନାଟ୍ୟକାରଙ୍କର ବାହ୍ୟ ଲକ୍ଷ୍ୟ । ଅନ୍ତର୍ନିହିତ ଏବଂ ପ୍ରଧାନ ଲକ୍ଷ୍ୟ ହେଉଛି ସାମାଜିକ କୁପ୍ରଥା, ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ବିରୁଦ୍ଧରେ ସଚେତନତା ସୃଷ୍ଟି ଯାହାକୁ ନିକୋଲ (interpretation) ବୋଲି କହିଛନ୍ତି । କେତୋଟି ବିଶ୍ୱାସଯୋଗ୍ୟ ଘଟଣା ଏବଂ ସମସାମୟିକ ଚରିତ୍ର ସାହାଯ୍ୟରେ ନାଟ୍ୟକାର ଅତି ସୁନ୍ଦର ଭାବରେ ନିଜ ଭାବକୁ ବିଶ୍ଳେଷଣ କରିପାରିଛନ୍ତି । ତେଣୁ କାହାଣୀଟି ପ୍ରକୃତରେ ନାଟକୀୟ ହୋଇପାରିଚି ।

ଆମେ ପ୍ରଥମରୁ ସୂଚନା ଦେଇଛୁ ଯେ ତତ୍ତ୍ୱ ଦୃଷ୍ଟିରୁ 'ବାବାଜୀ' ନାଟକକୁ ବିଶ୍ଳେଷଣ କରାଯିବା ଏକାନ୍ତ ଅନୁଚିତ ଏବଂ ନାଟ୍ୟକାରଙ୍କ ପ୍ରତି ଏହା ଅନ୍ୟାୟ ହେବ ମଧ୍ୟ । ନାଟକ ଧର୍ମୀ ଏକ କାହାଣୀ ରହିବା କଥା – ତାହା ଏଥିରେ ରହିଛି । କାହାଣୀର ଏକମୁଖୀ ରୂପ—ଏହାର ଗଠନକୁ ଦୃଢ଼ କରେ । 'ବାବାଜୀ' ନାଟକର କାହାଣୀ ଏକମୁଖୀ ହୋଇଥିବାରୁ ଏ ବିଷୟରେ ମଧ୍ୟ ପ୍ରଶ୍ନ ଉଠାଯାଇ ନ ପାରେ । ନାଟ୍ୟ-କାହାଣୀରେ ପରସ୍ପର ଦୁଇ ବିରୋଧୀ ତତ୍ତ୍ୱ 'ସୁ' ଏବଂ 'କୁ' ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱର ପରିକଳ୍ପନା କରାଯାଇ ପ୍ରଥମଟିର ବିଜୟ ପ୍ରତିଷ୍ଠିତ ହୋଇଛି । 'ବାବାଜୀ' ନିଜ

ଉଦ୍ୟମରେ ସମାଜର କିଛି ଅସାମାଜିକ ଭଙ୍ଗୀର ପରିବର୍ତ୍ତନ ଘଟାଇଛନ୍ତି । ଏହାକୁ ନାଟ୍ୟକାହାଣୀର ଉତ୍କର୍ଷ (Turning point) ବୁଝାଯାଇପାରେ । ଶେଷସ୍ତରର, (ଯାହାକୁ ନାଟ୍ୟଲେଖକମାନଙ୍କ ଭାଷାରେ Resolution ବୋଲି ବୁଝାଯାଇଥାଏ) ନାଟ୍ୟକାହାଣୀକୁ ଏକ ନିର୍ଦ୍ଦିଷ୍ଟ ପରିଣତି ଆଡ଼କୁ ଟାଣି ନେଇଥାଏ । ଯେଉଁ ଲକ୍ଷ୍ୟନେଇ ବିଷୟବସ୍ତୁର ପରିକଳ୍ପନା କରାଯାଇଥାଏ, ଏଇଠାରେ ତାହା ସଫଳ ହୁଏ । 'ବାବାଜୀ' ନାଟକର ଲକ୍ଷ୍ୟ ହେଉଛି କୁସଂସ୍କାର ବିଲୋପ । ନାଟ୍ୟକାର କାହାଣୀର ଶେଷ ସ୍ତରରେ 'ବାବାଜୀ' ମାଧ୍ୟମରେ ତାହାର ସଫଳତା ଦେଖାଇଛନ୍ତି । ଜାତୀୟ ସଚେତନତା ସୃଷ୍ଟି ନିମନ୍ତେ ବାବାଜୀଙ୍କୁ ହିଁ ମାଧ୍ୟମ (Objective corelative) ରୂପେ ବ୍ୟବହାର କରାଯାଇଛି । ମୂଳକାହାଣୀର କୌଣସି ଉପବୃତ୍ତ ନାହିଁ । ଜାତୀୟ ଜୀବନରେ ଦେଖାଦେଇଥିବା କେତେଗୁଡ଼ିଏ ଅହିତକାରକ ଅଭ୍ୟାସର ବିଲୋପ ସାଧନ ହେଉଛି ଏହି କାହାଣୀର Root Action । ବ୍ୟକ୍ତି ଜୀବନର ସୁପ୍ତ ଚେତନାକୁ ଜାଗ୍ରତ କରାଇ ତାହାକୁ ସତ୍‌ପଥରେ ପରିଚାଳିତ କରିବା ହେଉଛି ଏହାର Root Idea । ଏ ଉଭୟର କଳାତ୍ମକ ସମନ୍ୱୟରେ ନାଟ୍ୟକାର କାହାଣୀର ବୃତ୍ତ ପରିକଳ୍ପନା କରିଛନ୍ତି । ଘଟଣାର ସଙ୍କ୍ଷିପ୍ତୀକରଣ ଏଥିରେ ସହାୟକ ହୋଇଛି । କଥାବସ୍ତୁରେ କୌଣସି ଜଟିଳତା ନାହିଁ, ଘଟଣା-ଘଟଣା ମଧ୍ୟରେ ସେଭଳି କୌଣସି ଦ୍ୱନ୍ଦ୍ୱ ବା ସଂଘର୍ଷର ସୂଚନା ନାହିଁ । ନାଟକୀୟତା ସୃଷ୍ଟି ନିମନ୍ତେ ସେଭଳି କୌଣସି ସ୍ୱତନ୍ତ୍ର କଳ୍ପନାର ସାହାଯ୍ୟ ମଧ୍ୟ ନିଆଯାଇନାହିଁ । ସମସାମୟିକ କେତୋଟି ବାସ୍ତବ ଘଟଣାକୁ ଏକତ୍ରିତ କରାଯାଇ କାହାଣୀର ରୂପ ଦିଆଯାଇଛି ମାତ୍ର । ତେଣୁ 'ବାବାଜୀ' ନାଟକର କାହାଣୀ ଭାଗ ଯେ, ସୁପରିକଳ୍ପିତ ଏହା କୁହାଯାଇ ପାରୁନାହିଁ । ନାଟକ ଦୃଶ୍ୟ କାବ୍ୟ ଏବଂ ଏଥିରେ ଦେଇ ଦୃଶ୍ୟଧର୍ମିତାର ଘୋର ଅଭାବ ଦେଖିବାକୁ ମିଳୁଛି । ଶେଷ ଅଙ୍କରେ ଆନନ୍ଦପୂଜାଘରର କାର୍ଯ୍ୟକଳାପର ଯେଉଁ ବକ୍ତବ୍ୟଧର୍ମୀ ବର୍ଣ୍ଣନା ଦିଆଯାଇଛି, ତାହାକୁ ଦୃଶ୍ୟଧର୍ମୀ କରାଯାଇପାରିଥିଲେ, କାହାଣୀ ଭାଗ ଆହୁରି ପ୍ରଭାବଶାଳୀ ହୋଇପାରିଥାଆନ୍ତା । ତେବେ ଆମକୁ ମନେ ରଖିବାକୁ ପଡ଼ିବ ଯେ, ବାବାଜୀ ହେଉଛି ଓଡ଼ିଆ ଆଧୁନିକ ନାଟକର ପ୍ରଥମ ପୁରୁଷ । ନାଟକ ରଚନା ପାଇଁ ସେତେବେଳେ ନାଟ୍ୟକାରଙ୍କ ଆଗରେ ଯେଉଁ ଆଦର୍ଶ ଥିଲା, ସେଥିରୁ ତାତ୍ତ୍ୱିକ ବିଶ୍ଳେଷଣ ନିମନ୍ତେ କୌଣସି ସୁଯୋଗ ଆହୁରି ସୃଷ୍ଟି ହୋଇ ନ ଥିଲା । ଏପରି ସ୍ଥଳେ ଜଗନ୍ମୋହନ ଏକ ସରଳ କାହାଣୀ ଦର୍ଶକମାନଙ୍କୁ ଉପହାର ଦେଇଛନ୍ତି ଏବଂ ଏହାହିଁ ହେଉଛି ତାଙ୍କର ମୌଳିକତା ।

ବୈସାଦୃଶ୍ୟ (Contrast) ଯେ ନାଟ୍ୟ କାହାଣୀରେ ବୈଚିତ୍ର୍ୟ ସୃଷ୍ଟିକରି ଭଙ୍ଗୀରେ ଗତି ସଞ୍ଚାର କରିଥାଏ । ଏହି ଚିନ୍ତା ହୁଏ ତ ସେତେବେଳେ ନାଟ୍ୟକାରଙ୍କ ମନରେ ଆସି ନ ଥିଲା । ତେଣୁ ସେ ମୂଳକାହାଣୀରେ କୌଣସି ଉପକାହାଣୀ ଯୁକ୍ତ

କରିନାହାନ୍ତି । ଦ୍ୱିତୀୟ ନାଟକ 'ସଖୀ' ରଚନା କଲାବେଳକୁ ନାଟ୍ୟକାର ପ୍ରଥମ ନାଟକର ଦୋଷତ୍ରୁଟି ଉତ୍ତମ ରୂପେ ହୃଦୟଙ୍ଗମ କରିପାରିଥିଲେ । ତେଣୁ ତା'ର କାହାଣୀ ଗଠନକୁ ବଳିଷ୍ଠ ଏବଂ ଅଧିକ କଳାତ୍ମକ ରୂପ ଦିଆଯାଇଥିଲା । ଗୋଟିଏ ଏକମୁଖୀ କାହାଣୀର ପରିବେଷଣ ହିଁ ହେଉଛି 'ବାବାଜୀ' ନାଟକର ପ୍ରଧାନ ବୈଶିଷ୍ଟ୍ୟ । ଏହାର ସଫଳତା ଏବଂ ବିଫଳତାକୁ ତେଣୁ ସେଇ ଦୃଷ୍ଟିରୁ ବିଚାର କରାଯିବା ଉଚିତ ।

**ଚରିତ୍ର :**

ଘଟଣା ସଂଯୋଗରେ ପ୍ରସ୍ତୁତ ହୁଏ କାହାଣୀ ଏବଂ ମଞ୍ଚ ଉପରେ ସେଇ କାହାଣୀକୁ ରୂପାୟିତ କରନ୍ତି, କେତୋଟି ଚରିତ୍ର । ଏଇ ଚରିତ୍ର ସହ ବାସ୍ତବ ଜୀବନର ସମ୍ପର୍କ ଯେତେ ନିବିଡ଼ ହେବ, ସେଗୁଡ଼ିକ ସେତେ ବିଶ୍ୱାସଯୋଗ୍ୟ ହୋଇପାରିବ । ପୁଣି ଚରିତ୍ର ନିଜ ସମୟ ତଥା ପରିବେଶର ବିଶ୍ୱସ୍ତ ପ୍ରତିନିଧି ହେବା ଏକାନ୍ତ ଆବଶ୍ୟକ । ଘଟଣାର ରୂପାୟନରେ ଯେଉଁ ଚରିତ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, କିମ୍ବା ଯାହାକୁ କେନ୍ଦ୍ରକରି ଘଟଣା ଆବର୍ତ୍ତିତ ହୁଏ, ସେ ହେଉଛି ନାଟକର ମୁଖ୍ୟ ଚରିତ୍ର ଏବଂ ତା'ର ବ୍ୟକ୍ତିତ୍ୱ ପରିସ୍ଫୁଟନ ନିମନ୍ତେ, ଘଟଣାର ଯଥାଯଥ ରୂପାୟନ ନିମନ୍ତେ ନାଟ୍ୟକାର ଅନ୍ୟ ଯେଉଁ ଚରିତ୍ରଗୁଡ଼ିକର ପରିକଳ୍ପନା କରନ୍ତି, ସେଗୁଡ଼ିକୁ ସାଧାରଣତଃ ଗୌଣ ଚରିତ୍ର ବୋଲି କୁହାଯାଇଥାଏ ।

'ବାବାଜୀ' ନାଟକରେ ଜୀବନରେ ବିଭିନ୍ନ କ୍ଷେତ୍ରରୁ, ଭିନ୍ନ ଭିନ୍ନ ସ୍ତରରୁ ସଂଗୃହୀତ ଚରିତ୍ର ସ୍ଥାନ ପାଇଛନ୍ତି । ଏଥିରେ ମୋଟ ବାରଜଣ ପୁରୁଷ ଏବଂ ଚାରି ଜଣ ନାରୀ ଚରିତ୍ର ରହିଛି । ନାଟକର କ୍ଷୁଦ୍ର ପରିସରରେ ଏତେଗୁଡ଼ିଏ ଚରିତ୍ରର ସମାବେଶ, ଟିକିଏ ଅସ୍ୱାଭାବିକ ଅବଶ୍ୟ ମନେ ହେଉଛି । କାରଣ ଏଭଳି କ୍ଷେତ୍ରରେ ଚରିତ୍ରଗୁଡ଼ିକର ସ୍ୱଚ୍ଛନ୍ଦ ବିକାଶ ବ୍ୟାହତ ହୁଏ । ମାତ୍ର ଏଥିରେ ସେପରି ହୋଇନାହିଁ । କାରଣ ଏହାର ମୁଖ୍ୟ ଚରିତ୍ର ବାବାଜୀ ତିନୋଟିଯାକ ଅଙ୍କରେ ଉପସ୍ଥିତ ରହିଛି ଏବଂ ନାଟ୍ୟକାର ଏହାର ପୂର୍ଣ୍ଣବିକାଶ ପ୍ରତି ଯଥେଷ୍ଟ ସତର୍କ ରହିଛନ୍ତି । ସେ ଏହି ନାଟକର ନାୟକ ହୋଇପାରେ । ମୁଖ୍ୟ ଚରିତ୍ରର ବିରୁଦ୍ଧାଚରଣ କରୁଥିବା ଚରିତ୍ର ସାଧାରଣତଃ ନାଟକର ପ୍ରତିନାୟକ ବା ଖଳନାୟକ ହୋଇଥାଏ । ଆନନ୍ଦ ପଣ୍ଡା ପୂଜାରୀ ହେଉଛି ନାଟକର ସେଇ ଧରଣର ଚରିତ୍ର । ସେ ପ୍ରଥମ ଅଙ୍କରେ ଆତ୍ମପ୍ରକାଶ କରିଛି । ଦ୍ୱିତୀୟ ଅଙ୍କରେ ନାୟକର ଘୋର ବିରୋଧାଚରଣ କରିଛି ଏବଂ ପୁଣି ଶେଷ ଅଙ୍କରେ ପରିବର୍ତ୍ତିତ ହୋଇ ନାୟକ ପାଖରୁ କ୍ଷମାପ୍ରାର୍ଥୀ ହୋଇଛି । ନାଟକର ଚରିତ୍ରକୁ ସରଳ ଏବଂ ବର୍ତ୍ତୁଳ ଏଇଭଳି ଦୁଇଭାଗରେ ବିଭକ୍ତ କରାଯାଇଛି । ଆନନ୍ଦ ପଣ୍ଡା ହେଉଛି ବର୍ତ୍ତୁଳ ଧରଣର ଚରିତ୍ର । ଏ ଧରଣ ଚରିତ୍ରର ବୈଶିଷ୍ଟ୍ୟ ହେଉଛି ଯେ ଏମାନେ ପ୍ରଥମରୁ ଗୋଟିଏ ପ୍ରକାର ବ୍ୟକ୍ତିତ୍ୱଧାରୀ

ହୋଇଥିବା ବେଳେ ସମସ୍ତର ସ୍ୱପରେ ନାଟକର ପରିଣତି ବେଳକୁ ଏମାନଙ୍କର ପରିବର୍ତ୍ତନ ହୋଇଯାଇଥାଏ । ଆନନ୍ଦ ପଣ୍ଡାଙ୍କୁ ଏଇ ଧରଣର ଚରିତ୍ର ରୂପେ ଚିହ୍ନିତ କରାଯାଇପାରେ । ଏ ଚରିତ୍ରଟି ଜୀବନ ପ୍ରତି ସଦା ଅସନ୍ତୁଷ୍ଟ, ସାଧାରଣ ସଂସାରୀ ଭଳି ଜୀବିକା ପାଇଁ ପାପପୁଣ୍ୟ, ନ୍ୟାୟ ଅନ୍ୟାୟ ସମ୍ପର୍କରେ ଚିର ଉଦାସୀନ ଏକ ସୁବିଧାବାଦୀ ବାସ୍ତବ ଚରିତ୍ର, ନାଟକର ସ୍ୱଳ୍ପ ପରିସରରେ ସୁଦ୍ଧା ନାଟ୍ୟକାର ତା' ସମ୍ପର୍କରେ ଯାହା ସୂଚନା ଦେଇଛନ୍ତି, ଏବଂ ଯେଉଁ କ୍ରିୟା କଳାପ ଦ୍ୱାରା ତାକୁ ଉପସ୍ଥାପିତ କରିଛନ୍ତି, ସେଥିରେ ତାକୁ ବୁଝିବାକୁ କିମ୍ବା ନାଟକରେ ତା'ର ସ୍ଥିତିର ପ୍ରୟୋଜନୀୟତାକୁ ଗ୍ରହଣ କରି ନେବାରେ ଅସୁବିଧା ହୁଏ ନାହିଁ । ପ୍ରତ୍ୟେକ ଚରିତ୍ର ସୃଷ୍ଟି ପଛରେ ଔଚିତ୍ୟ ଥିବା ଏକାନ୍ତ ଆବଶ୍ୟକ ବୋଲି ଆଲୋଚକମାନଙ୍କର ମତ । ଆନନ୍ଦ ଚରିତ୍ରର ଦମ୍ଭୋକ୍ତି, ଭଣ୍ଡାମି ଏବଂ ଧୂର୍ତ୍ତତାର ପୃଷ୍ଠଭୂମିରେ ହିଁ ବାବାଜୀ ଚରିତ୍ରର ମହତ୍ତ୍ୱ ସ୍ପଷ୍ଟ ଭାବରେ ଫୁଟିଉଠିଛି । ତେଣୁ ଔଚିତ୍ୟ ଦୃଷ୍ଟିରୁ ଏ ଚରିତ୍ରକୁ ଅସ୍ୱୀକାର କରିବାର ଉପାୟ ନାହିଁ । ଏ ଦୁଇଟି ଚରିତ୍ରକୁ ଛାଡ଼ିଦେଲେ ନାଟକରେ ଅଛନ୍ତି ଧର୍ମଗିରୁ କନ୍ଥୁ, ମଦ୍ୟପ ବୃଦ୍ଧ ସ୍ୱାମୀ ସୁବଳ ପଟ୍ଟନାୟକ । ସେ କାଳର ଅଳସ ଧନାଢ୍ୟ ଗୋଷ୍ଠୀର ସେ ହେଉଛନ୍ତି ଯଥାର୍ଥ ପ୍ରତିନିଧି । ଧନସମସ୍ୟା ନାହିଁ, ଶିକ୍ଷାଦୀକ୍ଷା ମାନସମ୍ମାନ କିଛି ଅଛି ଅଥଚ କରିବାକୁ କିଛି ନାହିଁ । ତେଣୁ ସେ କାଳର ଏଇ ଧରଣର ଗୃହସ୍ଥଙ୍କ ଭଳି ତାଙ୍କର ମଦ୍ୟ ପାନଦୋଷ ରହିଛି । ନିଶାସକ୍ତ ଜଣେ ଧନୀମାନୀ ବ୍ୟକ୍ତିକୁ କିଭଳି ଅମଣିଷରେ ପରିଣତ କରିଦିଏ । ନାଟ୍ୟକାର ଏହାଙ୍କ ମାଧ୍ୟମରେ ଏତିକି ମାତ୍ର ଦେଖାଇବାକୁ ଚାହିଁଛନ୍ତି । ମଦ୍ୟପାନ ପରେ ତାଙ୍କର ଆଚରଣ ତାଙ୍କ ପୂଜାରୀ ଚାକରଙ୍କ ଦ୍ୱାରା ମଧ୍ୟ ନିନ୍ଦିତ ହୋଇଛି । ପ୍ରଥମ ଅଙ୍କ ପରେ ତାଙ୍କୁ ଆଉ ନାଟକରେ ଦେଖାଯାଇ ନାହିଁ । କାରଣ ତାଙ୍କଠାରୁ ନାଟ୍ୟକାରଙ୍କର ପ୍ରୟୋଜନ ଶେଷ ହୋଇଯାଇଛି । ତୃତୀୟ ଅଙ୍କର ଅଧିକାରୀ, ମହନ୍ତ, କାମୁନୀ, ମାଲତୀ ଏବଂ ଆଉ ଦୁଇଜଣ ସେବକ ଚରିତ୍ର ସ୍ଥାନ ପାଇଛନ୍ତି । ନିମ୍ନ ଗୋଷ୍ଠୀର ପ୍ରତିନିଧି ଶ୍ରେଣୀୟ ଚରିତ୍ର ପ୍ରତି ନାଟ୍ୟକାରଙ୍କର ସହାନୁଭୂତି ଏକ ପ୍ରମାଣ ସିଦ୍ଧ ବ୍ୟାପାର । ଖାର, ଦାମ, ଚାମ ପ୍ରଭୃତି ଏ ଶ୍ରେଣୀର ଯେଉଁ କେତୋଟି ଚରିତ୍ର ନାଟ୍ୟକାର ସୃଷ୍ଟି କରିଛନ୍ତି, ସେମାନଙ୍କଠାରେ ଉଦାରତା, ଦୟା, ପରାର୍ଥ-ପରତା, ସମ୍ବେଦନଶୀଳତା ପ୍ରଭୃତି ଏଭଳି କେତେକ ସଦ୍‌ଗୁଣର ଆରୋପ କରାଯାଇଛି ଯାହା ସମାଜର ଜଣାଶୁଣା ଚରିତ୍ର ଯଥା ଉଚ୍ଚବର୍ଣ୍ଣ କିମ୍ବା ଧର୍ମୀୟ ନେତା ଅଧିକାରୀ ଓ ମହନ୍ତ ପାଖରେ ମଧ୍ୟ ନାହିଁ । ଏ ଧରଣର ଚରିତ୍ରଗୁଡ଼ିକ ପ୍ରଧାନ ଚରିତ୍ରକୁ ସ୍ପଷ୍ଟ କରିବାରେ ସହାୟକ ହୋଇଥାଆନ୍ତି ଏବଂ ଏ କ୍ଷେତ୍ରରେ ମଧ୍ୟ ତାହା ହିଁ ହୋଇଛି ।

ମହନ୍ତ ଆଉ ଅଧିକାରୀ ଏ ନାଟକର ଦୁଇଟି ବିଶେଷ ଚରିତ୍ର । ମାତ୍ର ଗୋଟିଏ ଅଙ୍କରେ ସ୍ୱଳ୍ପ ସମୟ ପାଇଁ ମଞ୍ଚରେ ଏମାନଙ୍କର ଆବିର୍ଭାବ । ତାର ଭିତରେ

ନାଟ୍ୟକାର ଏମାନଙ୍କ ସମ୍ପର୍କରେ ବେଶ୍ ସ୍ପଷ୍ଟ ଧାରଣା ଦର୍ଶକମାନଙ୍କୁ ଦେଇପାରିଛନ୍ତି । 'ବାବାଜୀ'—ଜଣେ ସାଧୁସନ୍ଥ ଜାତୀୟ ଚରିତ୍ର—ସଂସାର ବିରାଗୀ-ଜଗତ୍‌ହିତ-କାମନାରେ ସାଧନାରତ । ଏମାନେ ମଧ୍ୟ ତାହାହିଁ । ମାତ୍ର ଏମାନେ ସଂସାର ଛାଡ଼ିଲେ ବି ସଂସାର ଏମାନଙ୍କୁ ଛାଡ଼ିନାହିଁ । ଅଜଗର ଭଳି ଗୁଡ଼ିଆଡ଼ି ବେଶ୍ ଦୃଢ଼ଭାବରେ ବାନ୍ଧିରଖିଛି । ସଂସାରପ୍ରତି ଦାୟିତ୍ୱ ନାହିଁ । ଭୋଗ ଅଛି ଷୋଳଅଣା-ବନ୍ଧନ ନାହିଁ ଅଣାକର । ରାଜସିକ ଏବଂ ତାମସିକ—ଏ ଦୁଇ ପ୍ରବୃତ୍ତି ଏମାନଙ୍କୁ ବେଶ୍ ଭଲଭାବରେ ବାନ୍ଧି ରଖିଛି । ଆହାର, ବ୍ୟବହାର, ସାଂସାରିକ ସୁଖର ଆୟୋଜନ—ଏସବୁ ଭିତର ଦେଇ ସେମାନଙ୍କ ବିଳାସ—ଲାଳିତ ଘୋର ସଂସାରୀ ରୂପଟିକୁହିଁ ନାଟ୍ୟକାର ଦେଖାଇ ଦେଇଛନ୍ତି । ପ୍ରକୃତ ସଂସାରୀ ସହିତ ଏମାନଙ୍କର ପାର୍ଥକ୍ୟ ହେଉଛି ଏତିକି ଯେ, ଏମାନେ ଯାହା ନୁହନ୍ତି, ସେଇ ଭୂମିକାରେ ତାଙ୍କୁ ଅବତୀର୍ଣ୍ଣ ହେବାକୁ ପଡ଼ୁଛି । ଯାହା ଏମାନଙ୍କର ହେବା କଥା, ତାକୁ ସେମାନେ ଭୁଲିଯାଇଛନ୍ତି । ତେଣୁ ଏଇ ଭଣ୍ଡ ଧର୍ମ ଧ୍ୱଜୀମାନଙ୍କୁ ସର୍ବଦା ଏକ ମୁଖା ପିନ୍ଧି ବୁଲିବାକୁ ପଡ଼ୁଛି । ନାଟ୍ୟକାର କ୍ଷଣକ ପାଇଁ ସେଇ ମୁଖା ଖୋଲିଦେଇ, ସେମାନଙ୍କ ବାସ୍ତବ ସ୍ୱରୂପକୁ ଦର୍ଶକମାନଙ୍କୁ ଚହ୍ନାଇ-ଦେଇଛନ୍ତି । 'ବାବାଜୀ' ଚରିତ୍ର ଶୁଭ୍ରସାତ୍ତ୍ୱିକ ଗୁଣର ପୃଷ୍ଠଭୂମିରେ ଏମାନଙ୍କ ଘୋର କୃଷ୍ଣକଜ୍ଜ୍ୱଳ ତାମସିକ ରୂପ ଦର୍ଶକମାନଙ୍କୁ ଆତଙ୍କିତ କରୁଛି ଏବଂ ସଚେତନ ମଧ୍ୟ କରୁଛି । ଏତିକି ହେଉଛି ନାଟ୍ୟକାରଙ୍କର ଲକ୍ଷ୍ୟ ଏବଂ ସେ ସେଥିରେ ସଫଳତା ମଧ୍ୟ ଲାଭ କରିଛନ୍ତି । ପୂର୍ବରୁ ସୂଚିତ ହୋଇଛି ଯେ, ଏ ଧରଣର ଚରିତ୍ର ଏବଂ ଘଟଣା ନାଟ୍ୟକାର ସଂଗ୍ରହ କରିଥିଲେ, ସମସାମୟିକ ସମାଜ ଜୀବନରୁ । ତେଣୁ ଏଗୁଡିକ ଜୀବନ୍ତ ଏବଂ ବାସ୍ତବ ହୋଇଛନ୍ତି । ଦୁଃଖ ଏତିକି ଯେ, ନାଟ୍ୟକାର ଏମାନଙ୍କ ଜୀବନର କୌଣସି ପରିଣତି ଦେଖାଇନାହାନ୍ତି । କେବଳ ନାଟ୍ୟକାରଙ୍କ ଲକ୍ଷ୍ୟ ତାହା ନଥିବାରୁ । ସେ ଦିଗରେ କୌଣସି ଉଦ୍ୟମ କରାଯାଇନାହିଁ । ପରିଣତି କଳ୍ପନା କରିବାର ଦାୟିତ୍ୱ ଦର୍ଶକମାନଙ୍କ ଉପରେ ଛାଡ଼ି ଦିଆଯାଇଛି । ନାଟ୍ୟତତ୍ତ୍ୱର ନିର୍ଦ୍ଦେଶ ଅନୁସାରେ ନାଟ୍ୟକାର ପ୍ରତ୍ୟେକ ଘଟଣା ବା ଚରିତ୍ରର ପରିଣତି ଦର୍ଶାଇବାକୁ ବାଧ୍ୟ ନୁହନ୍ତି । ପ୍ରୟୋଜନ ଅନୁସାରେ ସେ କିଛି କହିବେ ଏବଂ ବାକି ଦର୍ଶକମାନଙ୍କ କଳ୍ପନା ପାଇଁ ଛାଡ଼ିଦେବେ । ଏଥିରେ ମଧ୍ୟ ତାହାହିଁ ହୋଇଛି ।

ଶେଷ ଅଙ୍କରେ ନାଟ୍ୟକାର ମଞ୍ଚକୁ ଆଣିଛନ୍ତି ସ୍ୱେରିଟି ଚରିତ୍ରକୁ (ସ୍ୱେରିଟିକୁ ଛାଡ଼ି) ଦୁଇଜଣ ପୁରୁଷ-ଦୁଇଜଣ ନାରୀ । ଏମାନଙ୍କୁ ନାଟ୍ୟକାର ବ୍ୟବହାର କରିଛନ୍ତି 'ବାବାଜୀ'ଙ୍କ ଦୃଷ୍ଟି ଓ ଦର୍ଶନ, ଅଧିକାର ଓ ଆଭିମୁଖ୍ୟ ସମ୍ପର୍କରେ ଦର୍ଶକମାନଙ୍କୁ ଜଣାଇ ଦେବାପାଇଁ ଅନ୍ଧବିଶ୍ୱାସ ଓ କୁସଂସ୍କାର-ପୂର୍ଣ୍ଣ ଯୁଗରୁ ସମାଜରେ ପ୍ରଚଳିତ ଏ ଦୁଇ ଷଡ଼ଯନ୍ତ୍ରକ ବ୍ୟାପାରର ଶିକାର ହୋଇଥାଆନ୍ତି ସାଧାରଣତଃ ଏ ଦେଶର ନାରୀ ସମାଜ । ଶିଷ୍ୟ ଶିଷ୍ୟାର ଅଭାବ, ଗୃହର ଦୁର୍ଦ୍ଦଶା ମଧ୍ୟରେ ଜୀବନ କଟାଇ ଦେଉଥିବାରୁ

ବାହାର ଦୁନିଆ ସମ୍ପର୍କରେ ସେମାନଙ୍କର ଅଜ୍ଞତା, ସରଳବିଶ୍ୱାସ ଓ ନିସ୍ପୃହତା କାରଣରୁ ସେମାନେ ସହଜରେ ଯେ କୌଣସି କଥାକୁ ଗ୍ରହଣ କରି ନେଇ ନିଜେ ତଥା ନିଜର ପରିବାରକୁ କ୍ଷତିଗ୍ରସ୍ତ କରାଇଥାଆନ୍ତି । ଏହାର ସୁଯୋଗ ନିଅନ୍ତି କିଛି ଧୂର୍ତ୍ତ ମଣିଷ । ନାଟ୍ୟକାର ଏହାର ଅସାରତା ପ୍ରତିପାଦନ କରିବା ନିମନ୍ତେ ବାଛି ନେଇଛନ୍ତି ଯୋଡ଼ିଏ ନାରୀ-ରାଧୀ ଓ ଜେମାଁକୁ । ବାବାଜୀଙ୍କ ଅଲୌକିକ କ୍ଷମତା ସମ୍ପର୍କରେ ଶୁଣି ସେମାନେ ନିଜ ନିଜର ସମସ୍ୟା ନେଇ ତାଙ୍କୁ ଦେଖା କରିବାକୁ ଆସୁଛନ୍ତି । ସେମାନଙ୍କ ମାଧ୍ୟମରେ ନାଟ୍ୟକାର ଭୂତ, ପିଶାଚ, ଡାଆଣୀ, ଚିରଗୁଣୀ ପ୍ରଭୃତି କାଳ୍ପନିକ ପ୍ରେତ ଯୋନି ସମ୍ପର୍କରେ ଏ ଦେଶରେ ପ୍ରଚଳିତ ଭ୍ରାନ୍ତଧାରଣା ବିଷୟରେ ଦର୍ଶକମାନଙ୍କୁ ବୁଝାଇଛନ୍ତି । ଜୀବନ ପାଇଁ ଏସବୁ କେତେ କ୍ଷତିକାରକ ଉଦାହରଣ ଦେଇ ତାହା ବୁଝାଇଛନ୍ତି । ଏସବୁ ଭିତରୁ ଫୁଟି ଉଠିଛି, ବାବାଜୀଙ୍କର ହେତୁବାଦୀ ବୈଜ୍ଞାନିକ ଦୃଷ୍ଟି-କୋଣ । ସେ ଚରିତ୍ରର ପ୍ରୟୋଜନ ସେଇଠି ଶେଷ ହୋଇଛି ।

ପ୍ରସଙ୍ଗ କ୍ରମେ ଏଠାରେ 'ବାବାଜୀ' ନାଟକର ଅନ୍ୟ ଦୁଇନାରୀ ଚରିତ୍ର ଦ୍ୱୟରେ ମଧ୍ୟ ଆଲୋକପାତ କରାଯାଇପାରେ । ସେମାନେ ହେଲେ ଯଥାକ୍ରମେ ମାତା ନାମୁନୀ ଓ ସେବାକାରିଣୀ ମାଳତୀ । ମହନ୍ତ ଓ ଅଧିକାରୀ ଚରିତ୍ରର ତରଳତା ଦେଖାଇବା ନିମନ୍ତେ ଏମାନଙ୍କର ପରିକଳ୍ପନା । ଈଶ୍ୱର ପ୍ରେମର ମଳାଟ ତଳେ ଏମାନଙ୍କ ମାଧ୍ୟମରେ ଈଶ୍ୱରଙ୍କର ଚଳନ୍ତି ପ୍ରତିମାମାନେ ଶରୀର ପ୍ରେମର ଯେଉଁ ନିର୍ଲ୍ଲଜ୍ଜ ଲୀଳା ଚଳାଇଥାଆନ୍ତି, ତାହା ଦେଖାଇ ଦେବା ନିମନ୍ତେ ଏ ଧରଣର ଚରିତ୍ରର ପରିକଳ୍ପନା । ପେଟକୁ ମୁଠେ ଖାଇବାକୁ, ଦେହକୁ ଖଣ୍ଡେ ପିନ୍ଧିବାକୁ ଏମାନେ ଅନ୍ୟ ନିକଟରେ ଆତ୍ମସମର୍ପଣ କରି ନିଜର ଜୀବନକୁ ବ୍ୟର୍ଥ କରିଦିଅନ୍ତି । ଦାରିଦ୍ର୍ୟ, ଅଜ୍ଞତା, ଅଶିକ୍ଷା ଓ ଦୁର୍ବଳତା—ଏହାହିଁ ହୁଏ ସେମାନଙ୍କ ନୈତିକ ସ୍ଖଳନର ପ୍ରଧାନ କାରଣ । ଦୁଇଗୋଟି ନାରୀ ଚରିତ୍ର ମାଧ୍ୟମରେ ନାଟ୍ୟକାର ସେ ଯୁଗର ନାରୀମାନଙ୍କର ଅସହାୟତାକୁ ସ୍ପଷ୍ଟ ଏବଂ ଚମତ୍କାର ଭାବରେ ଫୁଟାଇ ପାରିଛନ୍ତି ଏସବୁ ଚରିତ୍ରର ପୂର୍ଣ୍ଣତା ଆଶା କରିବା ତେଣୁ ଉଚିତ ହେବ ନାହିଁ ।

ବାକି ରହିଲେ ନାଟକର ଦୁଇଟି ଚରିତ୍ର । ଜେମ୍ସ ଦଲାଇ ଏବଂ ଶିବମିଶ୍ର । ଜଣେ ହିନ୍ଦୁ ଅପର ଜଣକ ଖ୍ରୀଷ୍ଟିଆନ୍ । ଏମାନଙ୍କର ନିଜସ୍ୱ ପାରିବାରିକ ସମସ୍ୟା ରହିଛି । ସେଥିପାଇଁ ସେମାନେ ବାବାଜୀଙ୍କ ପାଖକୁ ଆସିଛନ୍ତି । ପ୍ରଥମରେ ବାବାଜୀ ଏମାନଙ୍କୁ ସାମ୍ପ୍ରଦାୟିକ ସଦ୍ଭାବର ମହତ୍ତ୍ୱ ବୁଝାଇଛନ୍ତି ଏବଂ ଅଲୌକିକତା ସମ୍ପର୍କରେ ଏ ଦେଶର ସାଧାରଣ ଜନତା ମଧ୍ୟରେ ଯୁଗ ଯୁଗରୁ ଯେଉଁ ବଦ୍ଧମୂଳ ଧାରଣା ପ୍ରଚଳିତ ରହିଛି, ତା ବିରୁଦ୍ଧରେ ବୁଝାଇଛନ୍ତି । ଆଳସ୍ୟ ତ୍ୟାଗ କରି କର୍ମପ୍ରବଣତାରେ ମାତି ଉଠିଲେ, ସାଂସାରିକ ଉନ୍ନତି ଯେ ନିଶ୍ଚିତ ସମ୍ଭବପର—ବାବାଜୀ ଏହା ସେମାନଙ୍କୁ

ଫୁଟାଇ ଦେଇଥିଲେ । 'କର୍ମଯୋଗ'ର ରହସ୍ୟ ଉଦ୍‌ଘାଟନ ତଥା ଶାନ୍ତିପୂର୍ଣ୍ଣ ସାମ୍ପ୍ରଦାୟିକ-ସଦ୍‌ଭାବ ଜନିତ ସହାବସ୍ଥାନ—ଏ ଦୁଇଟି ଉଦ୍ଦେଶ୍ୟ ପୂର୍ତ୍ତି ନିମନ୍ତେ ପୂର୍ବୋକ୍ତ ଚରିତ୍ର ଦ୍ୱୟର ପରିକଳ୍ପନା ।

'ବାବାଜୀ' ନାଟକରେ ନାୟକ, ପ୍ରତିନାୟକଙ୍କୁ ଛାଡ଼ିଦେଲେ ସର୍ବମୋଟ ଦଶଗୋଟି ସହାୟକ ଚରିତ୍ର ରହିଛନ୍ତି । କହିବା ବାହୁଲ୍ୟ ଯେ, କୌଣସି ଚରିତ୍ର ସୃଷ୍ଟି ଉଦ୍ଦେଶ୍ୟହୀନ ବୋଲି ମନେହୁଏ ନାହିଁ । ଚରିତ୍ରଗୁଡ଼ିକ ଆଦୌ କଳ୍ପନାପ୍ରସୂତ ନୁହନ୍ତି ଏବଂ ପ୍ରତ୍ୟେକ ଚରିତ୍ର ସୃଷ୍ଟି ପଛରେ ଔଚିତ୍ୟ ରହିଛି । ନିଜ ନିଜର ପରିବେଶକୁ ଫୁଟାଇବା ନିମନ୍ତେ ଏମାନେ ସମ୍ପୂର୍ଣ୍ଣ ରୂପେ ସମର୍ଥ ହୋଇଛନ୍ତି ବୋଲି ସ୍ୱୀକାର କରାଯାଇପାରେ ।

'ବାବାଜୀ' ହେଉଛି ଏକ ନାୟକ ପ୍ରଧାନ ନାଟକ ଏବଂ 'ବାବାଜୀ' ହେଉଛନ୍ତି ଏହାର ନାୟକ । ନାଟ୍ୟକାରଙ୍କର ଆଦର୍ଶବାଦୀ ଚିନ୍ତାଧାରା ମଧ୍ୟରୁ ତାହାଙ୍କର ସୃଷ୍ଟି । ଯଥାର୍ଥ ଭଗବତ୍ ଚିନ୍ତାରେ ବିଶ୍ୱାସୀ, ବୈଜ୍ଞାନିକ ଦୃଷ୍ଟିକୋଣ ସମ୍ପନ୍ନ, କର୍ମଯୋଗୀ, ସଂସାରର ହିତାକାଂକ୍ଷୀ—ଏ ଚରିତ୍ରକୁ ଏକ 'Positive Good man' ବୋଲି କୁହାଯାଇପାରେ । ସେ ଏହି ନାଟକର ପ୍ରତ୍ୟେକ ଘଟଣା ସହ ସଂପୃକ୍ତ ଏବଂ ଏହି କାରଣରୁ ଚରିତ୍ରଟି ସ୍ଥାଣୁ ନ ହୋଇ ଅଧିକ ଗତିଶୀଳ । 'ସର୍ବେ ଭବନ୍ତୁ ସୁଖୀନଃ' କିମ୍ବା 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ'ର ପାରମ୍ପରିକ ଦର୍ଶନରୁ ହିଁ ତାଙ୍କର ସୃଷ୍ଟି ।

ଅଧ୍ୟାପକ ବେଣୁଧର ରାଉତ 'ବାବାଜୀ' ନାଟକର ଚରିତ୍ର ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ତାଙ୍କ ମତରେ "ଏଠି ଏକମାତ୍ର ନିଶାଣ ତଥା ଲକ୍ଷଣ ବାସ୍ତବତା । ଏ ଭିତ୍ତିର ଭିତ୍ତିରେ ବାବାଜୀ ବାସ୍ତବଧର୍ମୀ ଏବଂ ଆଧୁନିକ ଚରିତ୍ରଗୁଡ଼ିକ ସଂକ୍ଷିପ୍ତ ହେଲେ ବି ସତ୍ୟ ଓ ଜୀବନ୍ତ ପରିପାଟୀରେ ଅସ୍ୱାଭାବିକ ରଙ୍ଗ ରଂଜିତ ନୁହନ୍ତି । "(ପ୍ରଥମ ଓଡ଼ିଆ ନାଟକ) ଏହାର ଚରିତ୍ର ଅତି ମାନବ, ଅତି ଭାବପ୍ରବଣ, ଅତି ଭୌତିକ, କିମ୍ବା ଉଦ୍ଭଟ ନ ହୋଇ ହୋଇଛନ୍ତି କେବଳ ବାସ୍ତବ । ବିଭିନ୍ନ ତତ୍ତ୍ୱ ଏବଂ ସମସ୍ୟାର ଜଟିଳତାର ସମାଧାନ ନିମନ୍ତେ ଏମାନଙ୍କୁ ପ୍ରୟୋଗ କରାଯାଇଛି । ଘଟଣା, ଉପଘଟଣାର ଘାତପ୍ରତିଘାତ ମଧ୍ୟରେ ପ୍ରତ୍ୟେକ ଚରିତ୍ର ଗତିଶୀଳ ହୋଇଛି । ଚରିତ୍ର ସବୁ ଆତ୍ମପ୍ରକାଶ କରିଛନ୍ତି ଘଟଣାର ଏକ ଅବିଚ୍ଛିନ୍ନ ଅଙ୍ଗ ରୂପେ । ତେଣୁ ମିଶ୍ର ମହାଶୟଙ୍କର ଏ ସମ୍ପର୍କୀୟ ସଫଳତା ନିଃସନ୍ଦେହ ।

ସଂଳାପ :

ଚରିତ୍ର ଏବଂ ଘଟଣାକୁ ଫୁଟାଇବାରେ ସାହାଯ୍ୟ କରେ ସଂଳାପ । ଏହା ପୁଣି କଥାବସ୍ତୁରେ ଗତି ସୃଷ୍ଟି କରେ; ନାଟ୍ୟ ସଂଘାତକୁ ଉଗ୍ର କରେ । ପରିବେଶୋପଯୋଗୀ

ସଂଳାପ ନାଟକକୁ ଦୁର୍ବଳତା ଦେଇଥାଏ ବୋଲି ଆଲୋଚକମାନେ ମତଦିଅନ୍ତି । ଚରିତ୍ରର ଶିକ୍ଷାଦୀକ୍ଷା ସାମାଜିକସ୍ଥିତି ପରିବେଶ, ବୟସ ପ୍ରଭୃତିକୁ ଆଖିରେ ରଖି ଯେଉଁ ସଂଳାପ ଯୋଜନା କରାଯାଏ ତାହାହିଁ ହୁଏ ପାତ୍ରୋପଯୋଗୀ । ସାଧାରଣ କଥୋପକଥନ ଏବଂ ନାଟ୍ୟ ସଂଳାପ— ଏହା ମଧ୍ୟରେ ପାର୍ଥକ୍ୟ ରହିଛି । ଶିଳ୍ପୋଚିତ ମର୍ଯ୍ୟାଦାରେ ଉନ୍ନୀତ ନ ହେବା ପର୍ଯ୍ୟନ୍ତ ସଂଳାପ ଯଥାର୍ଥରେ ସ୍ମରଣୀୟ ହୋଇ ପାରେ ନାହିଁ । ଏଥିପାଇଁ ସଂଳାପକୁ ଶାଣିତ ଏବଂ ନାଟ୍ୟଧର୍ମୀ ହେବାକୁ ପଡ଼ିବ । ଦୀର୍ଘ ବର୍ଣ୍ଣନାତ୍ମକ କାବ୍ୟିକ ସଂଳାପ ନାଟକ ପାଇଁ ଆଦୌ ଉପଯୁକ୍ତ ନୁହେଁ । ଆଲୋଚକ ଏରିକ୍ ବେଣ୍ଟ୍‌ଲି (Eric Bentley)ଙ୍କ ମତରେ, "All literature is made up of words, but plays are made up of spoken words, while any literature may be read aloud, plays are written to be read aloud—" (The Life of Drama) ନାଟ୍ୟସଂଳାପ ଯଥାସମ୍ଭବ କଥିତ ଭାଷାକୁ ଅନୁସରଣ କରିବ ଏବଂ ଅଭିବ୍ୟକ୍ତିରେ କୌଣସି କୃତ୍ରିମତା ପ୍ରକାଶ ପାଇବ ନାହିଁ ବୋଲି ବେଣ୍ଟଲି (Bentley)ଙ୍କର ମତ । ଏ ଦୃଷ୍ଟିରୁ ମୁଖ୍ୟତଃ କହିତ ଭାଷା ଉପରେ ଆଧାରିତ 'ବାବାଜି'ର ସଂଳାପ ଯେ ସାର୍ଥକ ହୋଇପାରିଛି ଏହା ନ କହିଲେ ମଧ୍ୟ ଚଳିବ । ସମାଜର ଭିନ୍ନ ଭିନ୍ନ କ୍ଷେତ୍ରରୁ ଏହି ନାଟକ ପାଇଁ ଚରିତ୍ର ସଂଗ୍ରହ କରାଯାଇଛି । ଚରିତ୍ରଗୁଡ଼ିକ ସମକାଳୀନ ସମାଜର ହୋଇଥିବାରୁ ଏମାନଙ୍କ ପାଇଁ ସଂଳାପ କଳ୍ପନାରେ ନାଟ୍ୟକାରଙ୍କର ନିଜ ପର୍ଯ୍ୟବେକ୍ଷଣ ଏବଂ ସ୍ମୃତି ଶକ୍ତି ହିଁ ତାଙ୍କର ସହାୟକ ହୋଇଛି । 'ଗୌରାଙ୍ଗଙ୍କର ସ୍ୱପ୍ନ' ଏହି ନାଟକର ସଂଳାପ ସମ୍ପର୍କରେ ଲେଖିଥିଲେ, "ନାଟକର ଭାଷା ଓ ରଚନା ଛଟା ଦୁଇ ପ୍ରକାର ହେବ । ଏଥିରୁ ଅତି ଚମତ୍କାର ରୂପେ ଗ୍ରନ୍ଥକର୍ତ୍ତା ଦେଖାଇଅଛନ୍ତି ।" (ଉତ୍କଳ ଦୀପିକା—୩ । ୧୧ । ୯୨୭) ଏତଜ୍ଜନବୋଧ, ସରଳ ତଥା ସ୍ୱଚ୍ଛନ୍ଦ ସଂଳାପ ଯୋଜନା ସମ୍ପର୍କରେ ଜଗନ୍ମୋହନଙ୍କର କୃତିତ୍ୱ ସନ୍ଦେହାତୀତ । ତେବେ ଓଡ଼ିଆ ଭାଷାର ଏହି ପ୍ରଥମ ନାଟକ କୌଣସି ସ୍ଥାନରେ 'ଅତିକଥନ' ଦୋଷରେ ଦୁଷ୍ଟ ହୋଇପଡ଼ିଛି । ଅତିଦୀର୍ଘ, ବର୍ଣ୍ଣନାତ୍ମକ, ଉପଦେଶମୂଳକ ସଂଳାପ ନାଟକର ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ଏହି କାରଣରୁ ମ୍ଳାନ କରିଦେଇଛି । ଏହାର ଦୁଇଟି ସମ୍ଭାବ୍ୟ କାରଣ ଥାଇପାରେ । (କ) ସେ କାଳର ଯାତ୍ରା ନାଟକର ଦୀର୍ଘ ବର୍ଣ୍ଣନାତ୍ମକ କାବ୍ୟିକ ସଂଳାପର ପ୍ରଭାବ (ଖ) ସଂସ୍କାର କାମନାରୁ ଉପଦେଶମୂଳକ ଦୀର୍ଘ ବର୍ଣ୍ଣନାର ପ୍ରୟୋଜନ ହେତୁ— ଏ ଧରଣର ସଂଳାପର ପରିକଳ୍ପନା । ସ୍ରଷ୍ଟା କାବ୍ୟକାର, ନାଟ୍ୟକାର, ଚିତ୍ରକର ନୁହନ୍ତି । ମନର ଆବେଗକୁ ସେମାନେ ରୂପ ଦିଅନ୍ତି । ମାତ୍ର ଏହି ଆବେଗ ଉପରେ ନିୟନ୍ତ୍ରଣ ଏକାନ୍ତ କାମ୍ୟ । ଏହା ଦ୍ୱାରା ହିଁ ସଂଳାପ ସଂକ୍ଷିପ୍ତ ଏବଂ ସୂଚନାତ୍ମକ ହୋଇ ପ୍ରଭାବଶାଳୀ ହୋଇଥାଏ । ପ୍ରଗଲ୍‌ଭଧର୍ମିତା ଯଥାର୍ଥ ସୃଷ୍ଟିଧର୍ମିତାର ବାଧକ । 'ବାବାଜି' ନାଟକର ଶେଷାଂଶରେ 'ବାବାଜି' ଏବଂ

'ପୁନାସ୍ତ୍ର' ମଧ୍ୟରେ ଯେଉଁ ସଂଳାପ ସ୍ଖଳିତ ହୋଇଛି, ତାହା ଏହି କାରଣରୁ ଅନାଟକୀୟ ହୋଇପଡ଼ିଛି । ଅନ୍ୟଥା ସାମଗ୍ରିକ ଭାବରେ 'ବାବାଜୀ' ନାଟକର ସଂଳାପ ଯୋଜନା ଯେ, ଯଥାର୍ଥରେ ସ୍ମରଣୀୟ ହୋଇ ପାରିଛି, ଏଥିରେ ଦ୍ୱିମତ ନାହିଁ । ଅଳଙ୍କାରଧର୍ମୀ ଉଚ୍ଛ୍ୱାସପୂର୍ଣ୍ଣ ଭାଷାକୁ ଏହି ନାଟକର ପରିସରରୁ ଦୂରରେ ରଖାଯାଇଛି । ପାରମ୍ପରିକ ନାଟକ ଭଳି ଏଥିରେ ମଧ୍ୟ ଜନାନ୍ତିକେ, ସ୍ୱଗତ ପ୍ରଭୃତିର ବ୍ୟବହାର ଅଛି । ମାତ୍ର ତାହା ପରିମିତ । ଚରିତ୍ରର ଆନ୍ତରିକ ଭାବ ପ୍ରକାଶ ନିମନ୍ତେ ପୂର୍ବରୁ ଏହି ଧରଣର ବ୍ୟବସ୍ଥା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟକରେ କରାଯାଉଥିଲା । ଜଗନ୍ମୋହନ ଏହାର କୃତ୍ରିମତା ଲକ୍ଷ୍ୟକରି ଏହାକୁ ଯଥାସମ୍ଭବ ସୀମିତ ରଖିଛନ୍ତି । ପାତ୍ରୋପଯୋଗୀ ସଂଳାପ ପରିକଳ୍ପନା କରିବାକୁ ଯାଇ ନାଟ୍ୟକାର ଏଥିରେ ଶିକ୍ଷିତ ବ୍ୟକ୍ତି ପାଇଁ ଇଂରାଜୀ ମିଶା ଓଡ଼ିଆ ଓ ବଙ୍ଗୀୟ ଚରିତ୍ର ପାଇଁ ବଙ୍ଗଳା ମିଶା ଓଡ଼ିଆ ଭାଷାର ବ୍ୟବହାର କରାଯାଇଛି । ସବୁଠୁଁ ବଡ଼ କଥା, ଏହି ନାଟକରେ ସଂଳାପକୁ ପ୍ରାଣମୂର୍ଚ୍ଛି କରିବାକୁ ଯାଇ, ନାଟ୍ୟକାର ଏଥିରେ ପ୍ରଚୁର ଢଗ, ଢମାଳି, ଲୋକୋକ୍ତି ଏବଂ ପ୍ରବଚନର ବ୍ୟବହାର କରିଛନ୍ତି । 'ସ୍ୱର୍ଗକୁ ନିଶୁଣି ନାହିଁ—ବଡ଼ ଲୋକକୁ ଉତ୍ତର ନାହିଁ', 'ହାଣ୍ଡିରେ ଖାଏ—ଗୋଡ଼ରେ ପେଡ଼ିଲେ ଗାଧୋଇ ଯାଏ', ଆଖୋଉ ଆଖୋଉ ପାଖେଇବୁ', 'ପୋଲରେ ଖାଇ ମେଲରେ ଗଡ଼ଗଡ଼ୋଉଛନ୍ତି', 'ଏହାତ ପୁଣ୍ୟ ସେହାତ ନ ଜାଣେ', ଅଜଗରକୁ ଦାତାରାମ', ପାପରୁ ପରମାଦ' 'ନିଜ ଗାଁ ମଶାଣି, ପର ଗାଁ ନଈ', 'ମାରତାଳ, ଉଠାଆଳ', 'ଯଦ୍ଭା ନ ଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁବଚନେ', 'ଅସତ୍ ଧନ ଫଳେ ବହୁତ, ଗଲାବେଳେ ଯାଏ ମୂଳ ସହିତ', 'ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ' । ଏଥିରେ ବ୍ୟବହୃତ ସୁଭାଷିତର ମାତ୍ର କେତୋଟି । ଏହାଛଡ଼ା ନାଟ୍ୟକାର ଏଥିରେ ବହୁ ପ୍ରାଚୀନ ଓଡ଼ିଆ ଶବ୍ଦର ବ୍ୟବହାର କରିଛନ୍ତି, ଯେଉଁଗୁଡ଼ିକ ଏବେ କ୍ୱଚିତ୍ ବ୍ୟବହୃତ ହେଉଛି, କିମ୍ବା ସମ୍ପୂର୍ଣ୍ଣ ଭାବରେ ବ୍ୟବହାରରୁ ବାଦ୍ ପଡ଼ିଗଲାଣି । ଉଦାହରଣ ସ୍ୱରୂପ 'ସନ୍ତେଇବା'—ଏହି ଶବ୍ଦଟି ପୂର୍ବେ ହଇରାଣ କରିବା, କଷ୍ଟଦେବା, ଅସନ୍ତୁଷ୍ଟ କରିବା ଅର୍ଥରେ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ଆଉ ଏହାର ବ୍ୟବହାର ନାହିଁ । ସେମିତି 'କୋହ ପଡ଼ିବା' ସେତେବେଳେ ଅଭିଶାପ ପଡ଼ିବା, ନିଃଶ୍ୱାସ ପଡ଼ିବା ଅର୍ଥରେ ବ୍ୟବହୃତ ହେଉଥିଲା । ବର୍ତ୍ତମାନ 'କୋହ' ଶବ୍ଦର ବ୍ୟବହାର ତ ବେଳେବେଳେ କରାଯାଉଛି । ମାତ୍ର ସେଠାରେ ତାହାର ଅର୍ଥ ଭିନ୍ନ ବୋଧା (ବୁଦ୍ଧିମାନ୍), ପଲଙ୍କ ଲଗି (ଶୟନ କରିବା), ସଞ୍ଚାର ହେବା (ଚଳିବା) ଦଣ୍ଡବତ (ଭେଟି) ତଙ୍କ ମୋଡ଼ିଦେବା (ଅଚେତ ହୋଇଯିବା) ଏସବୁଡ଼ିକ ଭାଷାକୁ ସୌଷ୍ଠବ ପୂର୍ଣ୍ଣ କରିବା ନିମନ୍ତେ ପୂର୍ବେ ଆମ ଭାଷାରେ ବହୁଳଭାବରେ ବ୍ୟବହୃତ ହେଉଥିଲା । ନାଟ୍ୟକାର ନାଟ୍ୟଭାଷାକୁ ଶିଳ୍ପୋଚିତ ସୌନ୍ଦର୍ଯ୍ୟରେ ରସ ସିକ୍ତ କରିବା-ନିମନ୍ତେ ଏହିଭଳି ବହୁ ପ୍ରାଚୀନ ଶବ୍ଦର ବ୍ୟବହାର ଏଥିରେ କରିଛନ୍ତି । ଏସବୁଡ଼ିକ ହିଁ

ନାଟ୍ୟସ୍ରଷ୍ଟାର ଅଳଙ୍କାର ସ୍ୱରୂପ ହୋଇଛି । ସଂଳାପକୁ ଜୀବନଧର୍ମୀ ଏବଂ ସ୍ୱାଭାବିକ ରୂପ ଦେଇଛି ।

## ଦ୍ୱନ୍ଦ୍ୱ, ସଂଘର୍ଷ ଏବଂ ଉତ୍କଣ୍ଠା :

ନାଟକର ସଫଳତା ପାଇଁ ଦ୍ୱନ୍ଦ୍ୱ ଓ ସଂଘର୍ଷର ଅବଦାନ ଅନସ୍ୱୀକାର୍ଯ୍ୟ । ଦ୍ୱନ୍ଦ୍ୱ ହେଉଛି ସେହି ଶକ୍ତି ଯାହା ଘଟଣା, ଚରିତ୍ରରେ ଗତି ସଞ୍ଚାର କରେ । ନାଟକର ସ୍ଥାଣୁତ୍ୱକୁ ଦୂର କରେ । ଏହାକୁ ନାଟକର ପ୍ରାଣ ବୋଲି ମଧ୍ୟ କୁହାଯାଇଥାଏ । ପାଶ୍ଚାତ୍ୟ ଆଲୋଚକ 'No conflict, no drama' ବୋଲି ମନ୍ତବ୍ୟ ଦେଇ ନାଟକରେ ଦ୍ୱନ୍ଦ୍ୱର ଭୂମିକାକୁ ସୁନିର୍ଦ୍ଦିଷ୍ଟ କରି ଦେଇଛନ୍ତି । ନାଟ୍ୟ ଘଟଣା ଓ ଚରିତ୍ରରେ 'ଆକସ୍ମିକତା', ହଠାତ୍ କୌଣସି ଏକ ନୂଆ ମୋଡ଼ ଦର୍ଶକମାନଙ୍କର ଉତ୍କଣ୍ଠା ବୃଦ୍ଧିରେ ସହାୟକ ହୋଇଥାଏ ଏବଂ ଏହା ଦ୍ୱାରା ନାଟକ ପ୍ରତି ଦର୍ଶକମାନଙ୍କର ଆଗ୍ରହ ବୃଦ୍ଧି-ପାଇଥାଏ । ଦ୍ୱନ୍ଦ୍ୱ ଦୁଇ ପ୍ରକାରର । ଯଥା: ବହିର୍ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ । ବହିର୍ଦ୍ୱନ୍ଦ୍ୱରେ ଯୁଦ୍ଧ ବିଗ୍ରହ, ମଣିଷର ଅପର ଶକ୍ତିର ସଂଘର୍ଷର ତଥା ଅନ୍ତର୍ଦ୍ୱନ୍ଦ୍ୱରେ ଚରିତ୍ରର ମାନସିକ ଘାତ ପ୍ରତିଘାତର ଚିତ୍ର ପ୍ରଦର୍ଶିତ ହୋଇଥାଏ । 'ବାବାଜୀ' ନାଟକରେ ଦ୍ୱନ୍ଦ୍ୱର ରୂପ ସେତେ ଗଭୀର ନୁହେଁ ସତ୍ୟ; ତେବେ ଏହା ଏକ ଦ୍ୱନ୍ଦ୍ୱହୀନ ନାଟକ ମଧ୍ୟ ନୁହେଁ । ଅହାରମୁଖା ବାବାଜୀଙ୍କର ଦ୍ୱାର ଦ୍ୱାର ଭ୍ରମଣ ମାଧ୍ୟମରେ ନାଟ୍ୟକାର ଏକ ଷଡ଼୍‌ରିପୁ ବ୍ୟକ୍ତିର ମାନସିକ ଦୈନ୍ୟର ଚିତ୍ର ପ୍ରଦାନ କରିଛନ୍ତି । ଏହା ନାଟ୍ୟ କାହାଣୀରେ କିଛିଟା ଗତି ସଞ୍ଚାର କରିବାରେ ସହାୟକ ହୋଇଛି । ଆନନ୍ଦ ପଣ୍ଡା ପୂଜାରୀର 'ବାବାଜୀ'ଙ୍କୁ ଭଣ୍ଡାଇବା ପ୍ରଚେଷ୍ଟାରେ ତଥା ସେନ ବାବାଜୀଙ୍କ ମୃଗଛାଲ ଅପହରଣ କରିବା ଘଟଣରେ ବାହ୍ୟଦ୍ୱନ୍ଦ୍ୱର ସାମାନ୍ୟ ସୂଚନା ମିଳିଥାଏ ମାତ୍ର । 'ବାବାଜୀ'ର ନାଟକୀୟ ଉତ୍କଣ୍ଠା ଦିଗଟି ଖୁବ୍ ଦୃଢ଼ ନ ହେଲେ ମଧ୍ୟ ପୂଜାରୀ, ସୁବଳ ପଟ୍ଟନାୟକ, ମଠାଧୀଶ, ଅଧିକାରୀ, ପ୍ରଭୃତିଙ୍କ କାର୍ଯ୍ୟକଳାପ ମାଧ୍ୟମରେ ନାଟ୍ୟକାର ଏହାର ଆଭାସ ଦେଇଛନ୍ତି । ହାଣ୍ଡି-ଭିତରୁ କୁକୁଡ଼ା ବାହାର କରି ଦର୍ଶକମାନଙ୍କର ଆଗ୍ରହ ଓ ଉତ୍ତେଜନା ବୃଦ୍ଧି ସହ ଆକସ୍ମିକତା ସୃଷ୍ଟିର ପ୍ରୟାସ ମଧ୍ୟ ଅଛି । ତେବେ ନାଟକ ପାଇଁ ସେତିକି ଯଥେଷ୍ଟ ବୋଲି କୁହାଯାଇ ପାରିବ ନାହିଁ ।

## ବାବାଜୀ ନାଟକରେ ସମସାମୟିକ ସମାଜ :

ଊନବିଂଶ ଶତକ ହେଉଛି ଓଡ଼ିଶାରେ 'ନବଜାଗରଣ'ର ସୂଚକ । ଏହି ସମୟରେ ହିଁ ଓଡ଼ିଆମାନେ ପଶ୍ଚିମୀ ସଭ୍ୟତା ଓ ସଂସ୍କୃତିର ପ୍ରତ୍ୟକ୍ଷ ସମ୍ପର୍କରେ ଆସନ୍ତି । ପଶ୍ଚିମୀ ଶିକ୍ଷାର କ୍ରମିକ ପ୍ରସାର ଫଳରେ ଲୋକଙ୍କର ଦୃଷ୍ଟିକୋଣ ବଦଳିବାକୁ ଆରମ୍ଭ କରେ । ନୂତନ ଗମନାଗମନର ବ୍ୟବସ୍ଥା, ମୁଦ୍ରଣ ଯନ୍ତ୍ରର ସ୍ଥାପନ, ଡାକତାର ବ୍ୟବସ୍ଥା

ଏବଂ ପତ୍ର ପତ୍ରିକାର ପ୍ରକାଶନ ଫଳରେ ଓଡ଼ିଶାର ବଦ୍ଧପଲ୍ଲୀତା ଦୂର ହୁଏ । ବାହାର ଦୁନିଆ ସହ ସମ୍ପର୍କ ସ୍ଥାପିତ ହୁଏ । ଜନଜୀବନରେ ଏହାର ଗଭୀର ପ୍ରଭାବ ପଡ଼ିବା ସ୍ୱାଭାବିକ । ପାଶ୍ଚାତ୍ୟ ଶିକ୍ଷାଲାଭ କରିଥିବା ନବ ଶିକ୍ଷିତ ଗୋଷ୍ଠୀଙ୍କର ହେତୁବାଦୀ ଦୃଷ୍ଟିକୋଣ ଏବଂ ବୈଜ୍ଞାନିକ ଚିନ୍ତାଧାରା ଓଡ଼ିଶାର ସାମାଜିକ ଜୀବନର ଦୋଷ ଦୁର୍ବଳତାକୁ ନୂତନ ଭାବରେ ଦେଖିବାକୁ ଆରମ୍ଭ କଲେ । ସଭା ସମିତି, ପତ୍ରପତ୍ରିକା, କାବ୍ୟ କବିତା ମାଧ୍ୟମରେ ସେମାନେ ପ୍ରଥମେ ଏ ସମ୍ପର୍କରେ ଜନସଚେତନତା ସୃଷ୍ଟି କରିବା ନିମନ୍ତେ ଉଦ୍ୟମ ଆରମ୍ଭ କଲେ । ବିବାହ-ଜନିତ ସମସ୍ୟା ଥିଲା ସେ କାଳର ଏକ ବଡ଼ ସମସ୍ୟା । ବାଲ୍ୟବିବାହ ଅସମ ବିବାହ, ସହିତ ବିଧବାମାନଙ୍କର ସମସ୍ୟା ସମାଜ ଜୀବନକୁ ଦୁର୍ବଳ କରିବାରେ ଲାଗିଥିଲା । ବଙ୍ଗ ଦେଶରେ ଈଶ୍ୱରଚନ୍ଦ୍ର ବିଦ୍ୟା-ସାଗର ବିଧବା ବିବାହ ସମ୍ପର୍କରେ କ୍ରମାଗତ ପ୍ରଚାରକରି ଏହାପାଇଁ ସରକାରୀ ଅନୁମୋଦନ ମଧ୍ୟ ଲାଭ କରିଥିଲେ । ରାମମୋହନଙ୍କ ନବ-ସୃଷ୍ଟ ବ୍ରାହ୍ମଧର୍ମ ଏ ଦେଶରୁ ପୌତ୍ତଳିକତା ଦୂର କରି ଧର୍ମୀୟ ଉଦାରତା ଓ ସହନଶୀଳତା ପ୍ରଚାର ନିମନ୍ତେ ଉଦ୍ୟମ ଚଳାଇଥିଲା । ଓଡ଼ିଶାରେ ମଧ୍ୟ ଏହାର ପ୍ରଭାବ ଦେଖା ଦେଇଥିଲା । ସେକାଳର ଶିକ୍ଷିତ ଗୋଷ୍ଠୀ ଅନ୍ଧବିଶ୍ୱାସ, କୁସଂସ୍କାର ବିରୁଦ୍ଧରେ ଲେଖନୀ ଉଠାଇ ନେଇଥିଲେ । 'ବାବାଜୀ' ନାଟକ ହେଉଛି ନାଟ୍ୟକାରଙ୍କର ସଂସ୍କାରପ୍ରିୟ ମନୋଭାବର ଫଳଶ୍ରୁତି ମାତ୍ର । ଧର୍ମ ନାମରେ ସେ କାଳର ସମାଜରେ ଯେଉଁ ଭଣ୍ଡାମି ଚାଲିଥିଲା, ଶିକ୍ଷିତ ଗୋଷ୍ଠୀ (ଯାହାକୁ କୁହାଯାଉଥିଲା ମଧ୍ୟବିତ୍ତ ଶ୍ରେଣୀର ଭଦ୍ରଲୋକ) ସେ ବିଷୟରେ ସଚେତନ ଥିଲେ । ଜାତିପ୍ରଥାର ଏହାହିଁ ଥିଲା ମୂଳଭିତ୍ତି । ଲୋକଙ୍କର ଅଶିକ୍ଷା, ଅଜ୍ଞତା ଜନିତ ନିସ୍ସହାୟତାର ସୁଯୋଗ ନେଇ କେତେକ ଭଣ୍ଡ ନିଜକୁ ଈଶ୍ୱରଙ୍କର ପ୍ରତିନିଧି ରୂପେ ଘୋଷଣା କରି, ସାଧାରଣ ଜନତାକୁ ଶୋଷଣ କରି ଚାଲିଥିଲେ । ବାବାଜୀ, ଅଧିକାରୀ, ମହନ୍ତ, ସାଧୁ ନାମଧାରୀ ଭଣ୍ଡମାନଙ୍କର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରିବା ଏକାନ୍ତ ପ୍ରୟୋଜନୀୟ ହୋଇ ପଡ଼ିଥିଲା । ଧର୍ମ ଏକ ସ୍ପର୍ଶକାତର ବିଷୟ ହୋଇଥିବାରୁ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା କିଛି ସହଜକଥା ନଥିଲା । ତଥାପି ଜଗନ୍ମୋହନଙ୍କ ଭଳି କେତେଜଣ ପଥିକୃତ୍ ଏ ଦିଗରେ ଉଦ୍ୟମ ଆରମ୍ଭ କରିଥିଲେ । ଜଗନ୍ମୋହନ ହେଉଛନ୍ତି, ପ୍ରଥମ ବ୍ୟକ୍ତି ଯେ କି ଧର୍ମଧ୍ୱଜୀ ମଠାଧୀଶଙ୍କ ସ୍ୱରୂପ ଉଦ୍‌ଘାଟନ କରିଥିଲେ ସାହିତ୍ୟ ମାଧ୍ୟମରେ । ଅବଶ୍ୟ ତା' ପୂର୍ବରୁ ଦେଶର ଅନ୍ୟାନ୍ୟ ପ୍ରାନ୍ତରେ ଏଇଧରଣର ଉଦ୍ୟମ ହୋଇଥିଲା ଏବଂ ପତ୍ରପତ୍ରିକାରେ ମଧ୍ୟ ଏ ସମ୍ପର୍କରେ ଲେଖାଲେଖି ଚାଲିଥିଲା । 'ବାବାଜୀ' ନାଟକରେ ଧର୍ମ ସମ୍ପର୍କୀୟ ଅନ୍ଧବିଶ୍ୱାସ କିଭଳି ସମାଜ ଜୀବନରେ ଈଶ୍ୱରଙ୍କର ଜୀବନ୍ତ ପ୍ରତିମା ରୂପେ ବିବେଚିତ ଏକ ପରାଙ୍ଗପୁଷ୍ଟ 'ମଲଙ୍ଗ' ଶ୍ରେଣୀକୁ ପରିପୁଷ୍ଟ ତଥା ସଂଗଠିତ କରିବାରେ ସହାୟକ ହୋଇଥିଲା, ସେ ବିଷୟରେ ସୂଚନା ଦିଆଯାଇଛି । ସମାଜର ଏହି ଗଳିତ ଏବଂ କ୍ଷତାକ୍ତ ଅଙ୍ଗ ସମ୍ପର୍କରେ ସାଧାରଣ ଜନତାକୁ ଅବହିତ କରାଇ ସେମାନଙ୍କର ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣିବା ଥିଲା ଏହାର ଲକ୍ଷ୍ୟ ।

ପାଶ୍ଚାତ୍ୟ ଶିକ୍ଷା ଏ ଦେଶର ଉପକାର ନିଶ୍ଚୟ କରିଥିଲା । ତାହା ସହିତ ମଦ୍ୟପାନ ଓ ବେଶ୍ୟାପ୍ରୀତି ନାମକ ଦୁଇଟି ମହାବ୍ୟାଧି ଶିକ୍ଷିତ ସମାଜର ବିଶେଷ ଯୋଗ୍ୟତା ରୂପରେ ବଙ୍ଗ ଦେଶ ମାଧ୍ୟମରେ ଏଠାରେ ପ୍ରବେଶ ଲାଭ କରି ବହୁ ସାମାଜିକ ସମସ୍ୟା ସୃଷ୍ଟି କରୁଥିଲା । ପୂର୍ବରୁ ଯେ ଏ ଦୁଇଟି ବ୍ୟାପାର ଏଠାରେ ନ ଥିଲା, ଏହା ନୁହେଁ । ବର୍ତ୍ତମାନ ଏହା ଯେଉଁଭଳି ସାମାଜିକ ସ୍ୱୀକୃତି ପାଇ-ଯାଇଥିଲା, ପୂର୍ବରୁ ଏହା କେବେ ହୋଇ ନ ଥିଲା । ବଡ଼ ବଡ଼ ଧନୀ, ସାମନ୍ତ, ଭୂମ୍ୟଧିକାରୀମାନେ ମଦ, ଅଫିମ, ଭାଙ୍ଗ ସେବନ କରୁଥିଲେ । ସାଧୁ ସନ୍ଥ, ମହନ୍ତମାନେ ଗଞ୍ଜେଇ, ଅଫିମ, ଭାଙ୍ଗ, ଗୁଲି ଇତ୍ୟାଦିର ନିୟମିତ ସେବକ ଥିଲେ । ପରିଣାମ ଯାହା ହେବାର ହେଉଥିଲା । ସୁବଳ ପଟ୍ଟନାୟକଙ୍କ ଭଳି ମାନୀ ଗୃହସ୍ଥ ମଧ୍ୟ ମଦ୍ୟପାନ ପରେ ଉପହସିତ ଅବସ୍ଥାକୁ ଆସି ଯାଇଛନ୍ତି । ବାବାଜୀ ଦୁଃଖ ପ୍ରକାଶ କରି କହୁଛନ୍ତି, "ଏପରି ବ୍ୟକ୍ତିର ଏପରି ଆଚରଣ !" ସମଗ୍ର ସମାଜ ପ୍ରତି ନାଟ୍ୟକାରଙ୍କର ଏହା ହେଉଛି ଏକ ଚେତାବନୀ । ବାରାଙ୍ଗନା-ବିଳାସ ସେ ସମୟର ସମାଜ ଜୀବନରେ କେଉଁଭଳି ଆସ୍ଥାନ ମାଡ଼ି ବସିଥିଲା, ତା'ର ସୂଚନା ମଧ୍ୟ ଏହି ନାଟକରେ ଦିଆଯାଇଛି । ମଠାଧୀଶ, ଅଧିକାଂଶ ଧର୍ମର ମୁଖାପିନ୍ଧି ମଠର ସେବିକାମାନଙ୍କୁ ଯେଉଁଭଳି ଯୌନ ନିର୍ଯାତନା ଦେଉଥିଲେ, ତା'ର ସ୍ପଷ୍ଟ ବର୍ଣ୍ଣନା ଦେଇ ନାଟ୍ୟକାର ଏହି ବ୍ୟବସ୍ଥାର ପ୍ରତିକାର ଲୋଡ଼ିଛନ୍ତି । ଉଚ୍ଚବର୍ଗ ନିମ୍ନବର୍ଗଙ୍କୁ କେଉଁଭଳି ନିଜ ଖିଆଲ ଖୁସିର ଖେଳଣା କରି ସେମାନଙ୍କୁ ଶୋଷଣ କରି ଚାଲିଥିଲେ, ନାଟ୍ୟକାର ତାହା ଦେଖାଇ ଦେଇଛନ୍ତି । ସାଧୁସନ୍ଥ ବାବାଜୀ ବୈଷ୍ଣବମାନଙ୍କ ପ୍ରତି ଏ ଦେଶରେ ଯୁଗ ଯୁଗରୁ ଯେଉଁ ଶ୍ରଦ୍ଧା ଓ ସମ୍ମାନ ରହିଆସିଛି, ତାର ସୁଯୋଗରେ ବହୁ ବ୍ୟଭିଚାର ଘଟି ଚାଲିଛି । ପ୍ରକୃତ ସାଧୁସନ୍ଥ ପାଣି ଟୋପାଏ ପାଉ ନ ଥିବା ବେଳେ ଭଣ୍ଡମାନେ ବିଳାସବ୍ୟସନରେ କାଳ କାଟୁଛନ୍ତି । ତଥାପି ଗୃହସ୍ଥମାନେ ଏହି ଗୋଷ୍ଠୀ ପ୍ରତି ନିଜର ମନୋଭାବ ବଦଳାଇବାକୁ ପ୍ରସ୍ତୁତ ନୁହଁନ୍ତି । ସୁବଳ ପଟ୍ଟନାୟକ ବାବାଜୀ ଦେଖିବା ମାତ୍ରକେ ତାଙ୍କର ସେବା ପାଇଁ ଉନ୍ମୁଖ ହୋଇ ଉଠିଛନ୍ତି । ଏହାହିଁ ଥିଲା ସେକାଳର ସାମାଜିକ ଚିତ୍ର ।

ଅଲୌକିକତା ପ୍ରତି ସେ ସମୟରେ ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ସମସ୍ତଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ଭୂତପ୍ରେତ ଡାହାଣୀ ଚିରକୁଣୀ ପ୍ରଭୃତି ଉପଦେବତାମାନେ ଯତ୍ରତତ୍ର ସମାଜ ଜୀବନର ଶାନ୍ତି ନଷ୍ଟ କରୁଥିବାର ଶୁଣାଯାଉଥିଲା । ଆନନ୍ଦ ପଣ୍ଡା ବାବାଜୀଙ୍କ ନାମରେ ଯେଉଁ ଗୁଜବ ରଟାଇ ଦେଇଥିଲା, ତାହାର ସତ୍ୟାସତ୍ୟ ବିଚାର ନ କରି ସୁଧୀ ପ୍ରେମୀଙ୍କ ଭଳି ଅଶିକ୍ଷିତା ନାରୀ ତ ସାଧାରଣ କଥା, ଜେମ୍‌ସ ଆଉ ଶିବଙ୍କ ଭଳି ଅର୍ଦ୍ଧଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ତହିଁରେ ବିଶ୍ୱାସ ସ୍ଥାପନ କରିଥିଲେ । ସମାଜ ଜୀବନ ସେତେବେଳେ ଏହିଭଳି ବହୁ ଅନ୍ଧବିଶ୍ୱାସ

ଦ୍ୱାରା ପୂର୍ଣ୍ଣ ଥିଲା । ଭୂତ ଡାହାଣୀ କାହାକୁ ମାଡ଼ିବସୁ ଥିଲେ ତ, କାହା ଘରକୁ ଟେକା ପଥର ଫୋପାଡ଼ୁଥିଲେ । ପିଶାଚୁଣୀ ଲାଗି ସ୍ତ୍ରୀଲୋକମାନଙ୍କୁ ବଡ଼ ଦୁରବସ୍ଥାରେ ପଡ଼ିବାକୁ ହେଉଥିଲା । ରାତିଅଧରେ ମଶାଣି ପଦାରେ ଚିରଗୁଣୀ ଆଲୁଅ ଦାଉ ଦାଉ ହୋଇ ଜଳୁଥିଲା । ନାଟ୍ୟକାର ଏ ସମସ୍ତ କାର୍ଯ୍ୟର ବିଶ୍ଳେଷଣ କରିଛନ୍ତି ବୈଜ୍ଞାନିକ ଭିତ୍ତିରେ । ଶିକ୍ଷିତ ସମାଜର ହେତୁବାଦୀ ମନୋବୃତ୍ତି ସେ ସମସ୍ତଙ୍କୁ ବିଜ୍ଞାନକୁ ଗ୍ରହଣ କରିବାକୁ ଆରମ୍ଭ କଲାଣି । କାରଣ ନ ଥାଇ କୌଣସି କାର୍ଯ୍ୟକୁ ଅାଖିବୁଜି ଗ୍ରହଣ କରିନେବାର ଦିନ ଶେଷ ହୋଇ ଆସୁଥିଲା । ନବ୍ୟଶିକ୍ଷିତ ତରୁଣ ଗୋଷ୍ଠୀ ପ୍ରତିବାଦ କରିବାକୁ ଶିଖି ଯାଉଥିଲେ । ଏଣେ ପୁଣି ସେଇ ସମ୍ପ୍ରଦାୟର ଗୋଟିଏ ସ୍ୱର 'Wine and women are the two things in the world.' ଭଳି ସ୍ଲୋଗାନ୍ ଦେଇ ସୁରା ଆଉ ସାକୀର ସ୍ୱପ୍ନରେ ବିଭୋର ଥିଲେ । କେମିତି ଆଉ ଶିବ ହେଉଛନ୍ତି, ଏହିଭଳି ଭ୍ରାନ୍ତ ଗୋଷ୍ଠୀର ପ୍ରତିନିଧି । ଏମାନେ ଗୋଟାଏ ପଟେ ଅଲୌକିକତା, ଚମତ୍କାରିତା ଉପରେ ଆସ୍ଥା ସ୍ଥାପନ କରିବେ, ପୁଣି ଅନ୍ୟପଟେ ମଦମାଂସ ମୈଥୁନର ତାତ୍କାଳିକ ଆନନ୍ଦ ପଛରେ ଛୁଟିବେ । ପରମହଂସ ବାବାଜୀମାନଙ୍କର ଚମତ୍କାରିତା ବର୍ଣ୍ଣନରେ ତାଙ୍କ ପାଦୋଦକ ପାଇବେ । ଏଣେ ପୁଣି ବାରାଙ୍ଗନା ସଂସର୍ଗରେ ମତ୍ତହୋଇ ରହିବାକୁ ମଧ୍ୟ ସଙ୍କୋଚବୋଧ କରିବେ ନାହିଁ । ଏଇଭଳି ଦୁଇ ନାବରେ ଗୋଡ଼ ଦେଇଥିବା ଲୋକଙ୍କୁ ଆଲୋଚ୍ୟ ନାଟକରେ ସମାଲୋଚନା କରାଯାଇଛି । ବସ୍ତୁତଃ ଏମାନେ ସମାଜରେ ସବୁବେଳେ ଥାଆନ୍ତି । ସଂଶୟର ଦୋଳାରେ ଝୁଲି ଝୁଲି ଏମାନଙ୍କର ସମୟ କଟିଯାଏ । ନା ଏ ପଟର ହୁଅନ୍ତି—ନା, ସେପଟର । ସେଇଥି ପାଇଁ କୁହାଯାଏ, ଦୁହେଁ ତରନ୍ତି, ମୂଢ଼େ ତରନ୍ତି ମଝି ମଝିକିଆ ବୁଡ଼ି ମରନ୍ତି ।' ବର୍ତ୍ତମାନ ଭଳି ସେ ଯୁଗର ସମାଜ ମଧ୍ୟ ଏହି ମଝିମଝିକିଆମାନଙ୍କୁ ନେଇ ସମସ୍ୟାରେ ପଡ଼ିଥିଲା । ନାଟ୍ୟକାର ଏଥିପ୍ରତି ତାହା ପ୍ରତି ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ସାମ୍ପ୍ରଦାୟିକତା ବର୍ତ୍ତମାନ ଭଳି ସେ ସମୟରେ ଭୟଙ୍କର ରୂପ ଧରି ନ ଥିଲା ସତ୍ୟ, ମାତ୍ର ତା'ର ଚିହ୍ନ କ୍ରମଶଃ ସ୍ପଷ୍ଟ ହେଉଥିଲା । ପୂର୍ବୋକ୍ତ ଦୁଇ ଚରିତ୍ର ମାଧ୍ୟମରେ ନାଟ୍ୟକାର ସେ ସମ୍ପର୍କରେ ସୂଚନା ଦେଇଛନ୍ତି ।

ଅଜ୍ଞାନତା, ଭ୍ରମ ଓ କୁସଂସ୍କାର ସେତେବେଳର ସମାଜ ଜୀବନର ସ୍ୱଚ୍ଛନ୍ଦ ବିକାଶରେ ବାଧକ ସ୍ୱରୂପ ଥିଲା । ନାଟ୍ୟକାର ଶେଷ ଅଙ୍କରେ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ମୋଟ ଉପରେ କେଣୁ କୁହାଯାଇ ପାରେ ଯେ, ଆଧ୍ୟାତ୍ମିକତା ସେ ସମୟର ସମାଜ ଜୀବନର ନିୟାମକ ଥିଲା । ଏହାର ସୁଯୋଗ ନେଉଥିଲେ କେତେକ ଭଣ୍ଡ ଆଉ ଧୂର୍ତ୍ତ ଧର୍ମଧ୍ୱଜୀ ଶଠ । ଏହାର କୌଣସି ପ୍ରତିକାର କେହି ଚିନ୍ତା କରୁ ନଥିଲେ । ଶିକ୍ଷା-ବିଶେଷତଃ ନାରୀଶିକ୍ଷାର ଅଭାବ ସମାଜକୁ କ୍ରମଶଃ

ଅନୁଃସାର ଶୂନ୍ୟ କରି ଦେଉଥିଲା । ଏହି ଗୋଷ୍ଠୀର ନାସ୍ତି ଅନ୍ୟ ସ୍ତରର ଜୀବନଙ୍କ ହୋଇ ମାରଣରେ ଶୋଷିତ ହେଉଥିଲେ । ପ୍ରତିବାଦର ସାହସ ଟିକିଏ ବି ସେମାନଙ୍କର ନଥିଲା । ବିଭିନ୍ନ ପ୍ରକାରର ନିଶା ଥିଲା ବାବୁସ୍ମାନଙ୍କର ଏକ ଅବିଚ୍ଛିନ୍ନ ଅଙ୍ଗ । ସମାଜର ପ୍ରତ୍ୟେକ ଗୋଷ୍ଠୀ-ଏଭଳିକି ଧର୍ମୀୟ ନେତାମାନେ ମଧ୍ୟ ଏହା କବଳରେ ଆତ୍ମସମର୍ପଣ କରି ବସିଥିଲେ । ସଂକ୍ଷେପରେ କହିବାକୁ ଗଲେ 'ବାବାଜୀ' ନାଟକରେ ଯେଉଁ ସମାଜ ଆମେ ଦେଖିବାକୁ ପାଉ, ତାହା ଏକ କଳୁଷିତ ରୁଗ୍ଣ ଏବଂ ସଂକୀର୍ଣ୍ଣ ସମାଜ । ଅନ୍ଧବିଶ୍ୱାସ ଆଉ କୁସଂସ୍କାରରେ ଜର୍ଜରିତ, ନିଶାରେ ପ୍ରମତ୍ତ ଏକ ଦୂଷିତ ସମାଜ । ବସ୍ତୁତଃ ସେ ସମୟର ସମାଜ ଥିଲା ମଧ୍ୟ ସେଇଭଳି । ଏଥିରୁ ତାକୁ ମୁକ୍ତ କରିବାର ସ୍ୱପ୍ନ ଦେଖାଯାଉଥିଲା 'ବାବାଜୀ' ନାଟକରେ ତା'ର ସୂଚନା ରହିଛି ।

**ବାବାଜୀ ନାଟକରେ ପାଶ୍ଚାତ୍ୟ ପ୍ରଭାବ :**

ବାବାଜୀ ହେଉଛି ପ୍ରସେନିୟମ ମଞ୍ଚ ନିମନ୍ତେ ଲିଖିତ ଓ ଅଭିନୀତ ପ୍ରଥମ ଓଡ଼ିଆ ନାଟକ । ଏ ମଂଚ ହେଉଛି ବିଦେଶର । ସେକ୍ସପିୟରଙ୍କ ସମୟରେ ଇଂଲଣ୍ଡରେ ଏହା ନଥିଲା । ଏହା ପରବର୍ତ୍ତୀ କାଳରେ ସୃଷ୍ଟ । ଇଂରେଜମାନେ ଏଠାକୁ ଆସିଲା-ବେଳେ ତାକୁ ସାଙ୍ଗରେ ଆଣିଥିଲେ । ତେଣୁ ଭାରତୀୟ ପ୍ରସେନିୟମ୍ ମଂଚ ହେଉଛି ପାଶ୍ଚାତ୍ୟ ସଂସ୍କୃତିର ଏକ ଅବଦାନ । ଜଗନ୍ମୋହନ 'ବାବାଜୀ' ନାଟକର ପରିକଳ୍ପନା କରିଥିଲେ ଏହି ମଂଚକୁ ଆଖିରେ ରଖି ଏବଂ ଏଥିରେ ତାହାର ଉପସ୍ଥାପନ ମଧ୍ୟ କରିଥିଲେ । ତେଣୁ ବିଦେଶୀ ପ୍ରଭାବରୁ ହିଁ ଏ ଧରଣର ଏକ ନାଟକର ପରିକଳ୍ପନା ତଥା ଉପସ୍ଥାପନ ସମ୍ଭବ ହୋଇଥିଲା ବୋଲି ପ୍ରଥମରୁ ସ୍ୱୀକାର କରିବାକୁ ହେବ ।

ଦ୍ୱିତୀୟତଃ ସେ ଦେଶର ହେତୁବାଦୀ ଦୃଷ୍ଟିକୋଣ, ବାସ୍ତବତା ପ୍ରତି ଅତୁଟ ବିଶ୍ୱାସ, ବୈଜ୍ଞାନିକ ଚିନ୍ତାଧାରା ପ୍ରତି ଆସ୍ଥା କ୍ରମଶଃ ଏ ଦେଶର ଜୀବନଧାରାକୁ ପ୍ରଭାବିତ କରୁଥିଲା । 'ବାବାଜୀ' ହେଉଛି ଏହାର ଏକ ସାହିତ୍ୟିକରୂପ ।

ତୃତୀୟତଃ ପାରମ୍ପରିକ ସଂସ୍କୃତ ନାଟକରେ ବିଷୟ ପ୍ରବେଶ ନିମନ୍ତେ ନଟନଟୀ ସୂତ୍ରଧାର ନାନ୍ଦୀ, ପ୍ରସ୍ତାବନା ଇତ୍ୟାଦିର ବ୍ୟବସ୍ଥା ରହିଥାଏ । ମାତ୍ର ବିଦେଶୀ ନାଟକରେ ଏଭଳି କୌଣସି ବ୍ୟବସ୍ଥା ନଥାଏ । ପାତ୍ର-ପାତ୍ରୀ ମାଧ୍ୟମରେ ସେଠାରେ ବିଷୟ ସମ୍ପର୍କରେ ପ୍ରଥମରୁ ହିଁ ସୂଚନା ଦେଇ ଦିଆଯାଏ । 'ବାବାଜୀ' ନାଟକରେ ଏଥିରୁ ପାରମ୍ପରିକ ବ୍ୟବସ୍ଥା ବଦଳରେ ପାଶ୍ଚାତ୍ୟ ରୀତିଟିକୁ ହିଁ ଗ୍ରହଣ କରି ନିଆଯାଇଛି । ଚରିତ୍ର ଚିତ୍ରଣରେ ମଧ୍ୟ ନାଟ୍ୟକାର ପାଶ୍ଚାତ୍ୟ ରୀତିଟିକୁ ଅଗ୍ରାଧିକାର ଦେଇଛନ୍ତି । ସଂସ୍କୃତ ନାଟକର ପୂର୍ଣ୍ଣ ଆଦର୍ଶବାଦୀ ଚରିତ୍ର (Positive Good man)

ବଦଳରେ କେବଳ ବାସ୍ତବବାଦୀ ଚରିତ୍ର (Natural Character)ହିଁ ଏ ନାଟକରେ ସ୍ଥାନ ପାଇଛନ୍ତି ।

ଚତୁର୍ଥତଃ ପାରମ୍ପରିକ ନାଟ୍ୟକାରମାନେ ଥିଲେ ରସବାଦୀ । ସେମାନଙ୍କ ନାଟକରେ ଭିନ୍ନ ଭିନ୍ନ ରସର ବିନ୍ୟାସ କରାଯାଉଥିଲା ଭିନ୍ନ ରୁଚିର ଦର୍ଶକମାନଙ୍କୁ ଅଖିରେ ରଖି । ଇଂରାଜୀ ନାଟକରେ ରସ ସେ, ପୂର୍ଣ୍ଣ ଉପେକ୍ଷିତ ଥିଲା, ଏହା ବୁଝା ନଯାଇ ବରଂ ବୁଝାଯାଇପାରେ ଯେ, ଇମୋସନ୍ (Emotion) ବା ରସକୁ ସେମାନେ ଏତେ ଗୁରୁତ୍ୱ ଦେଉ ନଥିଲେ । 'ବାବାଜୀ' ନାଟକରେ କୌଣସି ବିଶିଷ୍ଟ ରସ ଗୁରୁତ୍ୱ ପାଇଥିବା'ର ଦେଖାଯାଉ ନାହିଁ । ଏହାକୁ ସେ ଦେଶର ପ୍ରଭାବ ବୋଲି ବୁଝାଯାଇ ପାରେ ।

ପଞ୍ଚମତଃ ପାରମ୍ପରିକ ନାଟକର ଜଟିଳ ପଞ୍ଚସନ୍ଧି, ପଞ୍ଚଅବସ୍ଥା, ଅର୍ଥ ପ୍ରକୃତି ବ୍ୟବସ୍ଥାକୁ ଆଲୋଚ୍ୟ ନାଟକରୁ ପରିହାର କରାଯାଇଛି । ଏହାକୁ ମଧ୍ୟ ପାଶ୍ଚାତ୍ୟ ସଂସର୍ଗର ଫଳ ବୋଲି ସ୍ୱୀକାର କରାଯାଇପାରେ ।

ଷଷ୍ଠତଃ ପାରମ୍ପରିକ ନାଟକର ସଂଳାପରେ ସ୍ୱଚ୍ଛନ୍ଦତା ବଦଳରେ ବାକ୍ୟକଡ଼ାକୁ ପ୍ରାଧାନ୍ୟ ଦିଆଯାଉଥିଲା । ଚରିତ୍ରମାନେ ସଂଳାପ ଭିଜନମସ୍ତ କରୁଥିଲେ, ଆବେଗ-କମ୍ପିତ ସ୍ୱପ୍ନାଚ୍ଛନ୍ନ କଣ୍ଠରେ, ବାସ୍ତବ ଜୀବନ ସହ ଯାହାର ସମ୍ପର୍କ କ୍ଷୀଣ ଥିଲା । ସଂସ୍କୃତ ନାଟକ ଉଦ୍ଦିଷ୍ଟ ଥିଲା ଦେଶର ବିବେକୀ, ଛାତ୍ରକ, ପଣ୍ଡିତମାନଙ୍କ ପାଇଁ ସାଧାରଣ ଜନତାଙ୍କ ପାଇଁ ଏଥିରେ କୌଣସି ବାର୍ତ୍ତା ନଥିଲା । 'ବାବାଜୀ' ନାଟକର ଲକ୍ଷ୍ୟ ହେଲେ ଏ ଦେଶର ସାଧାରଣ ଜନତା । ସେଇମାନଙ୍କ ପାଟିର ଭାଷାକୁ ଏଥିରେ ସଂଳାପ ରୂପରେ ବ୍ୟବହାର କରାଗଲା । ଏ ପ୍ରବୃତ୍ତିଟି ବିଦେଶୀୟ ।

ସପ୍ତମତଃ, ଇଂରେଜମାନଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ପରେ ଏ ଦେଶର ଚିନ୍ତା ଜଗତର ଆମୂଳ ପରିବର୍ତ୍ତନ ଘଟିଯାଇଥିଲା । କୁସଂସ୍କାର, ଅନ୍ଧବିଶ୍ୱାସ, ଧର୍ମ ନାମରେ ଭଣ୍ଡାମି, ଜାତିପ୍ରଥା, ସାମ୍ପ୍ରଦାୟିକତା, ଅଶିକ୍ଷା ପ୍ରଭୃତି ବିରୁଦ୍ଧରେ ଏ ଦେଶର ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀ ପ୍ରତିବାଦର ସ୍ୱର ଉଠାଇବାକୁ ଆରମ୍ଭ କରିଥିଲେ । ବୈଜ୍ଞାନିକ ଚେତନା ସହ ପରିଚୟ ଏ ଦେଶର ଶିକ୍ଷିତ ଗୋଷ୍ଠୀକୁ ପ୍ରତ୍ୟେକ ଭାବର କାରଣ ଖୋଜିବା ନିମନ୍ତେ ପ୍ରେରଣା ଯୋଗାଉଥିଲା । ଲାଲ ମହାଶୟ ଥିଲେ ଏଇ ଗୋଷ୍ଠୀର ପ୍ରତିନିଧି, ଇଂରାଜୀ ଶିକ୍ଷା ଲାଭ କରିବାଫଳରେ ଏବଂ ସେ ଦେଶର ସଂସ୍କୃତି ସହ ପରିଚିତ ହୋଇସିବା ପରେ ଏ ଦେଶର ଦୋଷତ୍ରୁଟି ବଡ଼ହୋଇ ତାଙ୍କ ଆଗରେ ଠିଆ ହୋଇଥିଲା । ସେ ଏହାର ବିଲୋପ ଚାହୁଁଥିଲେ । 'ବାବାଜୀ' ନାଟକ ହେଉଛି ଏହାର ଆଦ୍ୟ ଫଳଶ୍ରୁତି । ପାଶ୍ଚାତ୍ୟ ସଂସର୍ଗରେ ଆସିବା ଫଳରେ ଲାଲଙ୍କର ଚିନ୍ତାଜଗତରେ

ଯେଉଁ ଆବେଦନ ସୃଷ୍ଟି ହୋଇଥିଲା, 'ବାବାଜୀ' ସେ ତେଣୁ ତାହାର ସ୍ୱାକ୍ଷର ରହିଯିବା ସ୍ୱାଭାବିକ।

ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ସମଗ୍ର ନାଟକଟିର କଳ୍ପନା, ଉପସ୍ଥାପନ ପଛରେ ନାଟ୍ୟକାରଙ୍କର ସେ ଦେଶର ନାଟ୍ୟାଦର୍ଶ ସହ ଘନିଷ୍ଠ ଯୋଗାଯୋଗ ହିଁ ହେଉଛି ପ୍ରଧାନ କାରଣ। ନାଟକର ମଞ୍ଚସଜ୍ଜା, କଥାବସ୍ତୁ ଚୟନ, ଚରିତ୍ର କଳ୍ପନା ପ୍ରଭୃତି ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଏହାର ପ୍ରମାଣ ଦେଖିବାକୁ ମିଳିବ।

## 'ବାବାଜୀ' ନାଟକର ମଞ୍ଚମୂଲ୍ୟ —

ନାଟକର ସାର୍ଥକତା ମଞ୍ଚରେ। ଏହାର ଦୋଷ ଗୁଣ, ସଫଳତା ବିଫଳତା ଦର୍ଶକମାନଙ୍କ ମନର କଷଟୀରେ ପରୀକ୍ଷିତ ହେବାର ସୁଯୋଗ ମଞ୍ଚରେ ହିଁ ମିଳେ। ଦର୍ଶକମାନେ ହିଁ ହେଉଛନ୍ତି ନାଟକର ସର୍ବଶେଷ ପୃଷ୍ଠପୋଷକ, ବିଚାରକ, ଉପଭୋକ୍ତା ସବୁ। ତେଣୁ କୁହାଯାଏ—'Drama's laws Drama's patron give.' ସମସ୍ତ ପ୍ରକାର ଯୋଗ୍ୟତା ଥାଇ ନାଟକ ଯଦି ତା'ର ପାଟ୍ରନ୍ (Patron) ବା ପୃଷ୍ଠପୋଷକମାନଙ୍କୁ ସନ୍ତୁଷ୍ଟ କରି ନ ପାରିଲା, ତେବେ ତାହା କେବଳ ପାଠ୍ୟ ନାଟକ (Closed Drama) ହୋଇ ରହିଯାଏ। ନାଟକର ଇତିହାସରେ ଏ ଧରଣର ନାଟକର ବିଶେଷ କୌଣସି ସ୍ଥାନ ନାହିଁ। କାରଣ ନାଟକ ହେଉଛି ଦୃଶ୍ୟ କାବ୍ୟ। "ତଦାଭିନେୟଂ" ଦୃଶ୍ୟମ୍। ଅଭିନେୟତ୍ୱ ତଥା ଦୃଶ୍ୟଧର୍ମିତା—ଏ ଉଭୟ ହେଉଛି, ନାଟକର ପ୍ରଧାନ ମୂଳ ଧର୍ମ। ଅଭିନେତା ବା ପାତ୍ର/ପାତ୍ରୀଙ୍କର ପାରସ୍ପରିକ ଆଚରଣ ସେଠାରେ ବୃତ୍ତ ପ୍ରସ୍ତୁତ କରେ। ନାଟ୍ୟକାରଙ୍କୁ ଏ କ୍ଷେତ୍ରରେ ସଂଳାପ ସାହାଯ୍ୟରେ ନିଜକୁ ବ୍ୟକ୍ତ କରିବାକୁ ପଡ଼େ। ଏ ସଂଳାପକୁ ମଞ୍ଚରେ ପ୍ରୟୋଗ କରନ୍ତି ଅଭିନେତା। ପ୍ରତ୍ୟେକ ସଂଳାପକୁ ବାଚନିକ ଏବଂ ସାତ୍ତ୍ୱିକ ଅଭିନୟ ମାଧ୍ୟମରେ ଜୀବନ୍ତ କରିବାର, ଚରିତ୍ରର ରୂପରୂପାନ୍ତରର ଚିତ୍ର ମଞ୍ଚରେ ଫୁଟାଇବାର ଦାୟିତ୍ୱ ହେଉଛି ଅଭିନେତାଙ୍କର। ଅଭିନେତା, ଦୃଶ୍ୟ ଏବଂ ମଞ୍ଚ ଏ ତିନୋଟି ଉପାଦାନରେ ସାମୂହିକ ସଫଳତା କଳାତ୍ମକ ସହାବସ୍ଥାନ ହିଁ ନାଟକକୁ ସଫଳତା ଦେଇଥାଏ। ଏହି କାରଣରୁ ମଞ୍ଚସାଫଲ୍ୟକୁ ନାଟକର ଦୃଶ୍ୟ-ଗୁଣର ମାନଦଣ୍ଡ ରୂପେ ଗ୍ରହଣ କରାଯାଇଥାଏ।

ଚକ୍ଷୁଗ୍ରାହ୍ୟ ଦୃଶ୍ୟ ଯୋଜନା, ଆଲୋକ ଓ ଶବ୍ଦ ପ୍ରୟୋଗର କାରିଗରି, ତଥା ଅଭିନେତା ଅଭିନେତ୍ରୀମାନଙ୍କର ବ୍ୟକ୍ତିତ୍ୱର ଆକର୍ଷଣ ମଞ୍ଚ ସଫଳତାର ଆନୁଷଙ୍ଗିକ କାରଣ। ତେବେ ସ୍ୱଚ୍ଛନ୍ଦ ଜୀବନଧର୍ମୀ ସଂଳାପ, ଜୀବନ ବୃତ୍ତିର ବିଶ୍ୱସ୍ତ ଉପସ୍ଥାପନ, ବଳିଷ୍ଠ କଥାବସ୍ତୁ ଏବଂ ଚରିତ୍ର ପ୍ରଭୃତି ନାଟକର ପ୍ରାୟ ପ୍ରତ୍ୟେକ ଉପାଦାନରେ ନାଟକର

ସଫଳତା ପଛରେ କିଛି ନା କିଛି ଅବଦାନ ରହିଥାଏ ଅସମ୍ଭବ ଦୃଶ୍ୟ ବା ଘଟଣା ପରିକଳ୍ପନା ଅନେକ ସମୟରେ ନାଟକର ମଞ୍ଚାୟନରେ ବାଧକ ହୋଇଥାଏ । ଏଇଟି ହେଉଛି ନାଟ୍ୟକାରଙ୍କର ଦାୟିତ୍ୱ ।

'ବାବାଜୀ' ହେଉଛି, ସମସାମୟିକ ଜୀବନଧାରାର ଏକ ଖଣ୍ଡିତ ଚିତ୍ର । ଯାହାର କଥାବସ୍ତୁର ବ୍ୟାପ୍ତି ମାତ୍ର ସାତ କିମ୍ବା ଆଠଘଣ୍ଟା ମଧ୍ୟରେ । ଆହୁରି ପ୍ରାର୍ଥନା ଭଜନକୁ ବାବାଜୀ ସୁବଳ ପଟ୍ଟନାୟକ ଘରକୁ ଆସୁଛନ୍ତି ଏବଂ ଘଡ଼ିର ପ୍ରଥମ ପ୍ରହରରେ ଆନନ୍ଦ ପଣ୍ଡାକୁ କିଛି ଉପଦେଶ ଦେବାପରେ ନାଟକ ଶେଷ ହୋଇଯାଉଛି । ପାତ୍ରପାତ୍ରୀ ରୂପେ ଏଥିରେ ଅଛନ୍ତି ସାଧାରଣ ଜୀବନରେ କେତେଜଣ ପ୍ରତିନିଧି । କେବଳ ଧନାସକ୍ତ ସୁବଳଙ୍କୁ ଛାଡ଼ିଦେଲେ ଆଉ କାହାଠାରେ ସେଭଳି କୌଣସି ନାଟକୀୟତା ମଧ୍ୟ ପ୍ରକଟିତ ହୋଇନାହିଁ । ତେଣୁ ମଞ୍ଚରେ ବର୍ଣ୍ଣାଢ଼୍ୟଭାବ ସୃଷ୍ଟି କରିବା ନିମନ୍ତେ ଏଥିରେ ସେଭଳି କୌଣସି ସୁଯୋଗ ନାହିଁ । ପରିବର୍ତ୍ତନ 'ପାଇଁ' ନୃତ୍ୟ ସଙ୍ଗୀତ ଅନେକ ସମୟରେ ଦର୍ଶକ-ମାନଙ୍କର ମନ ସଂଯୋଗରେ ସହାୟକ ହୋଇଥାଏ । ଏଥିରେ ନୃତ୍ୟ ଅଛି—ମାତ୍ର ସେ ମଦ୍ୟପମାନଙ୍କର ଉଦ୍ଦାମ ନୃତ୍ୟ । ତାହା କିଛି ହାସ୍ୟରସ ଅବଶ୍ୟ ସୃଷ୍ଟି କରୁଛି । ମାତ୍ର ତା'ର ବ୍ୟାପ୍ତି ମଧ୍ୟ ଖୁବ୍ ବେଶୀ ନୁହେଁ । ତିନୋଟି ସଙ୍ଗୀତ ଅଛି । ମାତ୍ର ଦୁଃଖର ସହିତ ସ୍ୱୀକାର କରିବାକୁ ପଡ଼ୁଛି ଯେ, ଏଗୁଡ଼ିକ ଲାଳିତ୍ୟହୀନ । ତେଣୁ ସେ ଦିଗରୁ ମଧ୍ୟ ନିରାଶ ହେବାକୁ ପଡ଼ୁଛି । ବୈଚିତ୍ର୍ୟ ସୃଷ୍ଟି ନିମନ୍ତେ ହାଣ୍ଡି ଭିତରୁ କୁକୁଡ଼ା ବାହାରିବା ଦୃଶ୍ୟଟି ମଧ୍ୟ ଯଥେଷ୍ଟ ନୁହେଁ ।

କରୁଣ, ଶୃଙ୍ଗାର ଆଉ ହାସ୍ୟ—ଏ ତିନୋଟି ରସ ଦର୍ଶକମାନଙ୍କୁ ଆକୃଷ୍ଟ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଏଥିରେ ରସାଭାସ ମାତ୍ର ଅଛି, କୌଣସି ରସ ପରିସ୍ଫୁଟ ହୋଇନାହିଁ । ଏହାର ଏକମାତ୍ର ଆକର୍ଷଣ ହେଉଛି ଜୀବନଧର୍ମୀ ସର୍ବଜନବୋଧ ସ୍ୱଚ୍ଛନ୍ଦ ସଂଳାପ । ଚରିତ୍ରର ମୁହଁର ଭାଷାକୁ ହିଁ ନାଟକ ପାଇଁ ଯୋଗାଡ଼ କରାଯାଇଛି । କାର୍ଯ୍ୟ ବ୍ୟବସ୍ଥା (action)ରେ ବୈଚିତ୍ର୍ୟ ସୃଷ୍ଟି ଅନେକ ସମୟରେ ନାଟକକୁ ଦୃଶ୍ୟଧର୍ମିତା ଦେଇଥାଏ । ଏଥିରେ ତାହା ଅନୁପସ୍ଥିତ । ଚରିତ୍ରମାନେ ସଂଳାପ ସାହାଯ୍ୟରେ ହିଁ ଯାହା କରିବାର କଥା କରିଛନ୍ତି । ଏଥିରେ ସାତ୍ତ୍ୱିକ, କିମ୍ବା ଆହାର୍ଯ୍ୟ-ଅଭିନୟର ସେଭଳି କୌଣସି ଚମତ୍କାର ବ୍ୟବସ୍ଥା ନାହିଁ । ତେବେ ଏହାର ମଞ୍ଚ ଯୋଜନା ଅତ୍ୟନ୍ତ ସୁନ୍ଦର । ଦୃଶ୍ୟବିହୀନ ମାତ୍ର ଚାରୋଟି ଅଙ୍କ । ପ୍ରଥମ ଅଙ୍କ ସୁବଳ ବାବୁଙ୍କ ବୈଠକଖାନା । ଦ୍ୱିତୀୟ ଅଙ୍କ ଠାକୁର ପିଣ୍ଡା । ତୃତୀୟ ଅଙ୍କ କୌଣସି ଏକ ମଠର ବହିର୍ଦ୍ୱାର ଏବଂ ଚତୁର୍ଥ ଅଙ୍କ ଗୋଟିଏ ଉପବନ । ପର୍ଦ୍ଦା ଖଣ୍ଡିଏ ଲେଖାଁ ମଞ୍ଚମାୟା ସୃଷ୍ଟି କରିବା ନିମନ୍ତେ ଯଥେଷ୍ଟ । ଚରିତ୍ରମାନଙ୍କର

ବେଶ ପୋଶାକ ବଦଳାଇବାର କୌଣସି ପ୍ରୟୋଜନ ନାହିଁ । କାରଣ କେବଳ ଗୋଟିଏ ଚରିତ୍ରକୁ ଛାଡ଼ିଦେଲେ ଅନ୍ୟ ଚରିତ୍ର ସବୁ ଥରେ ଲେଖାଁ ମାତ୍ର ମଞ୍ଚକୁ ଆସିଛନ୍ତି । ନାଟକର ସମୟସୀମା ମଧ୍ୟ ଖୁବ୍ ଅଳ୍ପ—ମାତ୍ର ସାତ/ଆଠ ଘଣ୍ଟା । ତେଣୁ ଆହାର୍ଯ୍ୟ ଅଭିନୟ ଦୃଷ୍ଟିରୁ କୌଣସି ସମସ୍ୟା ନାହିଁ । ସେ କାଳର ଏହା ମଞ୍ଚରେ ଉପସ୍ଥାପିତ ମଧ୍ୟ ହୋଇଥିଲା । ବର୍ତ୍ତମାନ ଉପଲବ୍ଧ ଆଲୋକ ଶବ୍ଦ କୌଶଳ ପ୍ରୟୋଗରେ ଏହା ଅଧିକ ଚିତ୍ତାକର୍ଷକ ହେବାର ସମ୍ଭାବନା ।

## ତ୍ରୟୀ ଐକ୍ୟ (Three Unities) :

ଆରିଷ୍ଟଟଲ୍ ନାଟ୍ୟ କଥାବସ୍ତୁର ଏକମୁଖୀ ପ୍ରଭାବ ସୃଷ୍ଟି କରିବା ନିମନ୍ତେ ତ୍ରୟୀ ଐକ୍ୟ ଏକାନ୍ତ ଆବଶ୍ୟକ ବୋଲି ମନେକରନ୍ତି । ସେଗୁଡ଼ିକ ହେଲା, କାଳଗତ ଐକ୍ୟ (Unity of time), ସ୍ଥାନଗତ ଐକ୍ୟ (Unity of place), ଏବଂ ଘଟଣାଗତ ଐକ୍ୟ (Unity of action) ଆଧୁନିକ ନାଟକରେ ଅବଶ୍ୟ ଏହି ତତ୍ତ୍ୱ ଉପରେ ଆଦୌ ଗୁରୁତ୍ୱ ଦିଆଯାଉ ନାହିଁ । ତେବେ ଓଡ଼ିଆ ଭାଷାର ପ୍ରଥମ ନାଟକରେ ନାଟ୍ୟକାର ଜ୍ଞାତ ବା ଅଜ୍ଞାତସାରରେ ହେଉ, ଏହି ତତ୍ତ୍ୱ ଉପରେ ବେଶ୍ ଗୁରୁତ୍ୱ ଦେଇଥିବାର ଲକ୍ଷ୍ୟ କରାଯାଇପାରେ । ପ୍ରଥମେ ସମୟଗତ ଐକ୍ୟ ବିଷୟ ଦେଖାଯାଉ । ଦୃଶ୍ୟକାବ୍ୟରେ ସମୟସୀମାର ଗୁରୁତ୍ୱ ଖୁବ୍ ବେଶି । ନାଟକରେ ଯେବେ ଦୀର୍ଘକାଳର ଘଟଣା ସବୁକୁ ଦେଖାଇବାର ବ୍ୟବସ୍ଥା ଥାଏ, ତେବେ ସେଇ ଅନୁସାରେ ଅଭିନେତାମାନଙ୍କର ଆହାର୍ଯ୍ୟ ଓ ବାଚନିକ ଅଭିନୟରେ ମଧ୍ୟ ପରିବର୍ତ୍ତନ ଦେଖାଇବାକୁ ପଡ଼ିବ । ବାଚିକ ସ୍ୱରନ୍ତ (Modulation) ଏ କ୍ଷେତ୍ରରେ ଅପରିହାର୍ଯ୍ୟ । ଏ ଜିନିଷଟି ଜଣେ ଅଭିନେତା ପାଇଁ ଏତେ ସହଜ ନୁହେଁ । ପ୍ରଥମ ଦୃଶ୍ୟ ଏବଂ ଦ୍ୱିତୀୟ ଦୃଶ୍ୟ ମଧ୍ୟରେ ଯଦି ଅନ୍ତତଃ ଦଶବର୍ଷର ସମୟସୀମା ଗ୍ରହଣ କରିନିଆଯାଏ, ତେବେ ଅଭିନେତା ଅସୁବିଧାରେ ପଡ଼ିଯିବେ । ତେଣୁ ଆରିଷ୍ଟଟଲ୍ ଦୀର୍ଘକାଳବ୍ୟାପୀ ଘଟଣାକୁ ଘଟଣା-ସମ୍ବଳ ନାଟକର ପରିସରରୁ ବାଦ୍ ଦିଆଯିବା କଥା କହିଛନ୍ତି । ଏ ଦୃଷ୍ଟିରୁ 'ବାବାଜି' ନାଟକର କୌଣସି ସମସ୍ୟା ନାହିଁ । ଏଥିରେ ମାତ୍ର ସାତ/ଆଠ ଘଣ୍ଟାର ଘଟଣାବଳୀ ସ୍ଥାନ ପାଇଛି । ଅଭିନେତା ପାଇଁ ଏହା ହେଉଛି ଅତ୍ୟନ୍ତ ସୁବିଧାଜନକ । ସେମିତି ସ୍ଥାନଗତ ଐକ୍ୟ । ଅଭିନୟକୁ ପ୍ରଭାବଶାଳୀ କରିବା ପାଇଁ ଏଥିରେ ଦୂରଦୂରାନ୍ତର ସ୍ଥାନକୁ ଅଭିନୟର କ୍ଷେତ୍ରରୂପେ ଗ୍ରହଣ ନ କରାଯିବା ଉଚିତ ବୋଲି ଆରିଷ୍ଟଟଲଙ୍କର ମତ । 'ବାବାଜି' ନାଟକରେ ବେଶ୍ ପାଖାପାଖି ଗୁଡ଼ିଏ ସ୍ଥାନକୁ ଅଭିନୟର କ୍ଷେତ୍ରରୂପେ ଗ୍ରହଣ କରି ନିଆଯାଇଛି । ବାକି ରହିଲା ଘଟଣାଗତ ଐକ୍ୟ ପ୍ରସଙ୍ଗ । 'ବାବାଜି' ନାଟକର ପ୍ରଧାନ ଘଟଣା ମାତ୍ର ଗୋଟିଏ ।

ଅନ୍ୟସବୁ ଯେଉଁ ଉପ-ଘଟଣାର ସୂଚନା ଏଥିରେ ରହିଛି ସେ ସବୁ ମୁଖ୍ୟ ଘଟଣାର ସହାୟକ ରୂପେ ହିଁ କଳ୍ପିତ ହୋଇଛି । ସ୍ଥୂଳତଃ, 'ବାବାଜୀ' ନାଟକରେ ସମ୍ଭାବ୍ୟତା ତତ୍ତ୍ୱ ସଫଳ ଭାବରେ ଆରୋପିତ ହୋଇ ପାରିଛି ବୋଲି କୁହାଯାଇପାରେ ।

ଉପସଂହାର :

'ବାବାଜୀ' ହେଉଛି ଏକ ନାଟ୍ୟପ୍ରାଣସ୍ରଷ୍ଟାଙ୍କର ଆନ୍ତରିକ ଚିନ୍ତା ଓ ଚେତନାର ଅର୍ଘ୍ୟକୁସୁମ । ଏହା ଏକ ନିର୍ଦ୍ଦିଷ୍ଟ ଭାବ (Idea)କୁ ଆଖିରେ ରଖି ପରିକଳ୍ପିତ ହୋଇଥିବାରୁ ଏଥିରେ କିଛିଟା ପ୍ରଚାର ଧର୍ମିତା ଅବଶ୍ୟ ଆସିଯାଇଛି । ମାତ୍ର ସେଥିପାଇଁ ଏହାକୁ ଏକାବେଳକେ ହସରେ ଉଡ଼ାଇ ଦେବାର କୌଣସି କାରଣ ନାହିଁ । ବରଂ ଗଡ୍ଡାଳିକା ପ୍ରବାହରେ ଭାସି ନଯାଇ ଲାଲ ମହାଶୟ ଯେ, ସେ କାଳରେ ସମ୍ପୂର୍ଣ୍ଣ ଏକ ଦୁଃସାହସିକ ବିଷୟକୁ ନେଇ, ନୂତନ ଶୈଳୀରେ ନାଟକ ରଚନା କରିବାକୁ ଆଗେଇ ଆସିଥିଲେ, ଏଥିପାଇଁ ତାଙ୍କୁ ସାଧୁବାଦ ଜଣାଇବାର କଥା । 'ବାବାଜୀ' ନାଟକର ନାଟ୍ୟକାରଙ୍କୁ କେବଳ କେତେଗୁଡ଼ିଏ ବିରୂପ ସମାଲୋଚନା ବ୍ୟତୀତ ଅନ୍ୟ କିଛି ମିଳିନଥିଲା । ଜଣେ ପତ୍ର ପ୍ରେରକ ତ ଲେଖିଥିଲେ, 'ବାବାଜୀ ନାଟକର ପ୍ରଣେତା ଯେପରି ନାଟକ କାହାକୁ ବୋଲାଯାଏ, ତାହା ନଜାଣି ନାଟକ ଲେଖିବାକୁ ପ୍ରବୃତ୍ତ ହୋଇଅଛନ୍ତି, ସେହିପରି ଆମ୍ଭମାନଙ୍କ ବାଲେଶ୍ୱର କାସିମାନେ ଯାତ୍ରା କାହାକୁ ବୋଲାଯାଏ ତାହା ନଜାଣି ଏକ ଯାତ୍ରାଦଳ ଫିଟାଇଲେ ଅଛନ୍ତି ।' ଜଗନ୍ମୋହନ ନାଟକ କାହାକୁ କୁହାଯାଏ ତାହା ଜାଣିଥିଲେ କମ୍ବା ନାହିଁ, ତାହାର ପ୍ରମାଣ ଦେବ 'ସତୀ' ନାଟକ, ଯାହାର ନାଟ୍ୟାଦର୍ଶ ଏ ଏପର୍ଯ୍ୟନ୍ତ ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି ବୋଲି ଆଲୋଚକମାନେ ମନ୍ତବ୍ୟ ଦେଉଛନ୍ତି । ମନ୍ତବ୍ୟ ଏମିତି ଦିଆଯାଏ । ତା' ପଛରେ କୌଣସି ଯଥାର୍ଥ ଚିନ୍ତା ଭାବନା କାର୍ଯ୍ୟକରେ ନାହିଁ । ବ୍ୟକ୍ତି ସମ୍ପର୍କ ହିଁ ଏଠାରେ ବଡ଼ ହୋଇ ଦେଖାଯାଏ । ହଳଦି ପାଣିକୁ ଗୋଡ଼ ବଢ଼ାଇବାକୁ ଇଚ୍ଛା କରୁନଥିବା ଆଲୋଚକମାନେ 'ମୁଦ୍ରଣ ପରିପାଟୀ, ପ୍ରଚ୍ଛଦ, ରଚନାଶୈଳୀ' ସମ୍ପର୍କରେ ଉଦାର ମନ୍ତବ୍ୟ ଦିଅନ୍ତି ମଳାଟ ତଳକୁ ନଆନାଇ । ନହେଲେ ପାରମ୍ପରିକ ଆବେଗ-ପ୍ରଧାନ-ଆଦର୍ଶବାଦ ଭିତରୁ ବାହାର କରି ଆଣି ଯେଉଁ ସ୍ରଷ୍ଟା ଓଡ଼ିଆ ସାହିତ୍ୟକୁ ପ୍ରଥମେ ବାସ୍ତବବାଦର ମୁହାଁମୁହିଁ କରି ଠିଆ କରାଇ ଦେଲେ, ତାଙ୍କ ସମ୍ପର୍କରେ ଏଭଳି ଅକରୁଣ ମନ୍ତବ୍ୟ ଦିଆଯାଇ ନଥାନ୍ତା । ପ୍ରଥମରୁ ସୂଚିତ ହୋଇଛି ଯେ, ଲାଲ ମହାଶୟ ବାସ୍ତବବାଦର ସମର୍ଥକ ଥିଲେ । କଳ୍ପନାର ଚମତ୍କାରିତା ଲୀଳା ପ୍ରଦର୍ଶନ ନକରି ସେ ତତ୍କାଳୀନ ସମାଜର ଦୋଷଦୁର୍ବଳତାକୁ ଦର୍ଶକମାନଙ୍କ ଆଗରେ ଅନାବୃତ କରିଥିଲେ । ବିଷୟ ନିର୍ବାଚନ, ଚରିତ୍ର କଳ୍ପନା, ସଂଳାପ ଯୋଜନା, ନାଟକର ପ୍ରତ୍ୟୋକଟି ଅଙ୍ଗ ନାଟ୍ୟକାରଙ୍କର ବାସ୍ତବମୁଖିନତାର ପରିଚାୟକ । ନାଟକରେ ବାସ୍ତବବାଦର ଭୂମିକା

ଠ'ଣ ସେ ବିଷୟରେ ଜଣେ ବିଦେଶୀ ଆଲୋଚକଙ୍କର କମ୍ପ ମନ୍ତବ୍ୟ ପଢ ଅପେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଛୁଁ । ତାଙ୍କ ମତରେ, "ଯେ କୌଣସି ସଫଳ ନାଟକର ଭିତ୍ତିଭୂମି ହେଉଛି ବାସ୍ତବ ଚରିତ୍ର । ଏହାର ସବୁଠାରୁ ବଡ଼ ଲକ୍ଷଣ ହେଉଛି, ସ୍ୱାଭାବିକତା । ସମସ୍ତରଦାବୀ ଓ ପ୍ରୟୋଜନୀୟତା ଅନୁଯାୟୀ ଏବଂ ରଙ୍ଗମଞ୍ଚର ଆବଶ୍ୟକତା ଦୃଷ୍ଟିରୁ ଏପରି ବିଷୟ ପରିବେଷିତ ହେବା ଉଚିତ, ଯାହା ସତ୍ୟ ରୂପେ ପ୍ରତିଷ୍ଠିତ ହୋଇ ପାରିବ ।" (Collected Plays/S. Maugham/Preface to 2nd Vol.) ସତ୍ୟାନୁସନ୍ଧାନର ଏକ ସଦୁଦ୍ଦେଶ୍ୟନେଇ ଯେଉଁ ନାଟ୍ୟକାର ଲେଖନୀ ଚାଳନା କରନ୍ତି, ତାଙ୍କର ଆନ୍ତରିକତା ଉପରେ ପ୍ରଶ୍ନଚିହ୍ନ ଲଗାଇବା କେତେଦୂର ଯୁକ୍ତିଯୁକ୍ତ, ତାହା ପାଠକମାନେ ହିଁ ବିଚାର କରିବେ ।

ଜଣେ ସମାଲୋଚକ 'ବାବାଜୀ' ନାଟକକୁ ପୀନବନ୍ଧୁ ମିଶ୍ରଙ୍କର 'ଲୀଳାବତୀ' ନାଟକ ସହିତ ତୁଳନା କରିଛନ୍ତି । ଗୋଟିଏ ବିଷୟକୁ ନେଇ ଏକାଧିକ ସ୍ରଷ୍ଟା ଚିନ୍ତା କରିବା କିଛି ଦୋଷାବହ ନୁହେଁ । 'ଲୀଳାବତୀ' ନାଟକ ହୁଏତ ଜଗନ୍ମୋହନ ଦେଖିଥିବେ । ମାତ୍ର ବାବାଜୀଙ୍କ ଚରିତ୍ରରେ ଯେଉଁ ସଂସ୍କାର ପ୍ରବଣତାର ସୂଚନା ଦିଆଯାଇଛି, ତାହା ଲୀଳାବତୀ ନାଟକର ଛଦ୍ମବେଶୀ ବାବାଜୀଠାରେ ଖୋଜିଲେ ମିଳିବ ନାହିଁ । 'ବାବାଜୀ' ନାଟକର ଭିତ୍ତି ହେଉଛି, ଔଚିତ୍ୟ ଏବଂ ବାସ୍ତବତା' । ସମାଲୋଚକ ଗାସ୍‌ନର୍ (Gassner) ଙ୍କ ମତରେ A play lives by its logic and reality. ଜଗନ୍ମୋହନଙ୍କ ନାଟ୍ୟରେ ଏହି ଆଦର୍ଶ ବଳିଷ୍ଠ ହୋଇଥିଲା । ସେ ସମୟ ପାଇଁ ଏହାର ଆବଶ୍ୟକତା ଥିଲା ଯଥେଷ୍ଟ । ପଡ଼ୋଶୀ ପ୍ରଦେଶରେ ଦଶ ଏହି ଧରଣର ନାଟକ ରଚିତ ତଥା ଅଭିନୀତ ହେଉଥିଲା । ଜଗନ୍ମୋହନ ତେଣୁ 'ବାବାଜୀ' ନାଟକ ରଚନା କାଳରେ ସମୟର ଦାବୀକୁ ସମ୍ମାନ ଜଣାଇବା ସ୍ୱାଭାବିକ ।

ସାହିତ୍ୟ ସୃଷ୍ଟି ସମ୍ପର୍କରେ ରୁଚି ଅନୁକୂଳ ମନ୍ତବ୍ୟ ଦେବାର ଅଧିକାର ସମସ୍ତଙ୍କର ରହିଛି । ମାତ୍ର ମନେ ରଖିବାକୁ ହେବ ଯେ, The first necessity for appreciation is a recognition of the convention of the theatre for which the plays were written." (Introduction Six plays by Corneille and Racine) କାଳ ମହାନ୍ତି ଯେ କି ଓଡ଼ିଶାରେ ସ୍ଥାୟୀ ମଞ୍ଚ ସ୍ଥାପନ କ୍ଷେତ୍ରରେ 'ଭଗିରଥ'ର ଭୂମିକା ଗ୍ରହଣ କରିଥିଲେ ସେ ସମୟର ମଞ୍ଚର ପ୍ରୟୋଜନ ବିଷୟ ତାଙ୍କର ଅଜଣା ନଥିଲା । ତାଙ୍କର ନାଟକଗୁଡ଼ିକୁ ସେ ଓଡ଼ିଶାର ସାଧାରଣ ଜୀବନର ଏକ ଯଥାର୍ଥ ପ୍ରତିବିମ୍ବ ରୂପେ ଗଢ଼ିଥିଲେ କେବଳ ଏହି କାରଣରୁ । ମନୋରଞ୍ଜନ ତାଙ୍କ ନାଟ୍ୟ ସୃଷ୍ଟିର ପ୍ରଧାନ ଲକ୍ଷ୍ୟ

ନଥିଲା । ତା' ପଛରେ ରହିଥିଲା ତାଙ୍କର ଏକ ମହତ୍ ଉଦ୍ଦେଶ୍ୟ । ତାହା ହେଉଛି ସମାଜ ସଂସ୍କାର । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ସେ ମନୋରଞ୍ଜନଠାରୁ କିଛି ପରିମାଣରେ ଦୂରେଇ ଯାଇଛନ୍ତି ସତ୍ୟ । ତେବେ ସମ୍ପୂର୍ଣ୍ଣ ଭାବରେ ଲକ୍ଷ୍ୟଭ୍ରଷ୍ଟ ହୋଇ ନାହାନ୍ତି ।

ସମାଲୋଚକମାନେ ମନେକରନ୍ତି ଯେ, କୌଣସି ବିଶେଷଧରଣର ସାମାଜିକ ଚେତନା ସ୍ରଷ୍ଟାର ମନୋଜଗତକୁ ତୀବ୍ର ଭାବରେ ଆଲୋଡ଼ିତ ନ କଲେ ସୃଷ୍ଟି ସ୍ମରଣୀୟ ହୋଇ ନଥାଏ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ କେବଳ ନ'ଅଙ୍କ ଦୁର୍ଭିକ୍ଷ ଭଳି ଦୁଃଖଦ ଘଟଣାକୁ ଛାଡ଼ିଦେଲେ, ସେଭଳି ସ୍ମରଣୀୟ ଘଟଣା କିଛି ଘଟିନାହିଁ । ପରାଧୀନତା, ଶକ୍ତିଶାଳୀର ଅତ୍ୟାଚାର ସହି ଏ ଦେଶର ଜନତା ଅଭ୍ୟସ୍ତ ହୋଇ ସାରିଥିଲେ । ଦାରିଦ୍ର୍ୟ ଦୋଷ ସେମାନଙ୍କର ସମସ୍ତ ଶକ୍ତିକୁ ହରଣ କରି ନେଇଥିଲା । ସେମାନେ ପ୍ରତିବାଦ କରିବାକୁ ମଧ୍ୟ ସାହସ କରୁ ନଥିଲେ । ଭାଗ୍ୟ ଆଉ ଭବିତବ୍ୟର ଏକ ନିତାନ୍ତ ଦୁର୍ବଳ ବଳୟ ଭିତରେ ଭୀତତ୍ରସ୍ତ ଜୀବନଯାପନ କରୁଥିଲେ । ଶିକ୍ଷାର ଅଭାବରୁ ପ୍ରତିବାଦ ଶକ୍ତି ମଧ୍ୟ ସେମାନଙ୍କର ନଥିଲା । ସେମାନଙ୍କ ବଞ୍ଚିବାକୁ ଲୁହାଲୁହି-ପାରେ, ଏ ଦେଶର ଅଗଣିତ ଦରିଦ୍ର ନିଷ୍ପୀଡ଼ିତ ଓ ଲାଞ୍ଛିତ ଜନତାର ବାଧ୍ୟ ବେଶରେ ଜୀବନ ଧାରଣ । ଜନତାର ଏଇ ଅସହାୟତା, ଦୁର୍ବଳତା ଓ ପୀଡ଼ା—ସମ୍ବେଦନଶୀଳ ସ୍ରଷ୍ଟା-ହୃଦୟକୁ ଗଭୀର ଭାବରେ ଆଲୋଡ଼ିତ କରିଥିଲା । ଜଗନ୍ମୋହନ ଏଇ ଅଧଃପତିତ ଜନତାଠାରେ ଦେଖିବାକୁ ପାଇଥିଲେ ବିଶ୍ୱାସ, ସହୃଦୟତା; ଦୟା, କ୍ଷମା, ଉଦାରତା ଆଦି ସ୍ୱର୍ଗୀୟ ଗୁଣ । ଉଚ୍ଚଶ୍ରେଣୀଠାରେ ସେ ପାଇଥିଲେ, ନିଷ୍ଠୁରତା, ଘୃଣା, ସ୍ୱାର୍ଥପରତା, ବ୍ୟକ୍ତି କୈନ୍ଦ୍ରିକତା ଏବଂ ଅହଂମ୍ମନ୍ୟତା ପ୍ରଭୃତି ନାରକୀୟ ଦୁର୍ଗୁଣଗୁଡ଼ିକ । ଜୀବନ ଏବଂ ସମାଜଠାରୁ ଏହାହିଁ ଥିଲା ତାଙ୍କର ଅନୁଭବ ।

ଅଜସ୍ର ସାମାଜିକ ସମସ୍ୟା ତାଙ୍କୁ ସତତ ବ୍ୟସ୍ତ କରୁଥିଲା । ଲୋକଙ୍କ ଆଗରେ ସେଗୁଡ଼ିକୁ ଦେଖାଇଦେବା, ସେମାନଙ୍କୁ ନିଜର ବାସ୍ତବ ସ୍ଥିତି ସମ୍ପର୍କରେ ବୁଝାଇ-ଦେବାକୁ ସେ ନିଜର କର୍ତ୍ତବ୍ୟ ମନେ କରିଥିଲେ । ତାଙ୍କର ବିଚାରଧାରା ଥିଲା ସମ୍ପୂର୍ଣ୍ଣ ଆଧୁନିକ ବୈଜ୍ଞାନିକ ଚିନ୍ତା ନିୟନ୍ତ୍ରିତ । ସୃଷ୍ଟିର ଆବହମାନ କାଳରୁ ସମାଜରେ ରହି ଆସିଥିବା ଶ୍ରେଣୀ ବୈଷମ୍ୟର କ୍ଷତିକାରକ ଦିଗ ସମ୍ପର୍କରେ ମଧ୍ୟ ସେ ସଚେତନ ଥିଲେ । ଖୋଲା ଖୋଲି ସାମ୍ୟବାଦର ପ୍ରଚାର ନ କରିଥିଲେହେଁ ତାଙ୍କର ଯଥାର୍ଥ ଶ୍ରଦ୍ଧାର ପାତ୍ର ଥିଲେ ଏ ଦେଶର ଚିର ଅବହେଳିତ ଗୋଷ୍ଠୀ । 'ବାବାଜୀ' ନାଟକରେ ଏହାର ପ୍ରମାଣ ରହିଛି ।

ନାଟକଭଳି ସାହିତ୍ୟର ଏକ ପ୍ରଭାବଶାଳୀ ବିଭାଗକୁ ପ୍ରୟୋଜନ ବୋଧରେ ସମାଜର ଦୋଷତ୍ରୁଟି ଦୂରୀକରଣରେ ଲଗାଯାଇ ପାରିବ, ଓଡ଼ିଶାରେ ଜଗନ୍ମୋହନ ହିଁ

ପ୍ରଥମେ ଏ ସ୍ୱପ୍ନ ଦେଖିଥିଲେ । ଓଡ଼ିଆ ଭାଷାରେ ତ କୌଣସି ନାଟକ ସେ ପର୍ଯ୍ୟନ୍ତ ଲେଖାଯାଇ ନଥିଲା । ତେଣୁ ବଙ୍ଗଳା ନାଟକହିଁ ତାଙ୍କର ଅବଲମ୍ବନ ଥିଲା । ସ୍ଥାୟୀ ମଞ୍ଚ ପ୍ରତିଷ୍ଠା ପୂର୍ବରୁ ମଧ୍ୟ ସେ ଅସ୍ଥାୟୀ ମଞ୍ଚ ଗଢ଼ି ହରିଶ୍ଚନ୍ଦ୍ର ଜାମାଇ ବାରିକ୍ ପ୍ରଭୃତି ବଙ୍ଗଳା ନାଟକର ଅଭିନୟ କରାଇଥିଲେ । ପରେ ସ୍ୱରଚିତ ନାଟକ 'ବାବାଜୀ' 'ସଙ୍ଗ', ବୃନ୍ଦାବନ ଯାତ୍ରା' ଏବଂ 'ପ୍ରୀତି' ମଧ୍ୟ ଏହି ମଞ୍ଚରେ ଅଭିନୀତ ହୋଇଥିବାର ଜଣାଯାଏ । ପୁଣି ଏସବୁ ନାଟକର ନିର୍ଦ୍ଦେଶକ, ମୁଖ୍ୟ ଅଭିନେତା ଭୂମିକାରେ ମଧ୍ୟ ତାଙ୍କୁ ଦେଖିବାକୁ ମିଳୁଥିଲା । ବାବାଜୀ ନାଟକର 'ବାବାଜୀ', 'ସଙ୍ଗ' ନାଟକର ଖଳନାୟକ କଳୀ ବାହାବନ୍ଦେନ୍ଦ୍ର ଏବଂ 'ପ୍ରୀତି' ନାଟକର ନାୟକ 'କେନାମଣି' ଭୂମିକାରେ ସେ ଅଭିନୟ କରିଥିଲେ ବୋଲି ଜଣାଯାଉଛି ।

ନାଟକ ପାଇଁ ଏତେ ଅବଦାନ ଯାହାଙ୍କର ତାଙ୍କୁ ସମାଲୋଚନାର ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ଆଘାତ କରିବା ଦ୍ୱାରା ଯେ ପୂଜ୍ୟପୂଜା ବ୍ୟତିକ୍ରମ ଦୋଷ ଘଟିବ, ଏଥିରେ ସନ୍ଦେହ ନାହିଁ ।

ଆଧୁନିକ ଓଡ଼ିଆ ନାଟକ ସାହିତ୍ୟର ଯଥାର୍ଥ ପ୍ରତିଷ୍ଠାତା, ନିର୍ମାତା ହେଉଛନ୍ତି ଜଗନ୍ମୋହନ । ନାଟକପାଇଁ ସେ ପ୍ରଥମେ ପଥଟିଏ ପ୍ରସ୍ତୁତ କରିଥିଲେ । ଏଥିରେ ହୁଏତ ସିମେଣ୍ଟ କଂକ୍ରିଟ ଦ୍ୱାରା ପ୍ରସ୍ତୁତ ପଥର ଦୃଢ଼ତା ନାହିଁ, ହୁଏତ ନାହିଁ ପଥପାର୍ଶ୍ୱରେ ତ୍ରସ୍ତ ଛନ୍ନ ବୃକ୍ଷର କ୍ଲାନ୍ତି ଅପନୋଦନ କ୍ଷମତା । ମାତ୍ର ଅଜଣା ପାଖରେ ପହଞ୍ଚିବାକୁ, ଅଚିହ୍ନାଙ୍କୁ ଚିହ୍ନା କରାଇଦେବାକୁ, ତା'ଭଳି ଅବଲମ୍ବନ ଅବା ଦ୍ୱିତୀୟ କାହିଁ ? ତେଣୁ ସମାଲୋଚକର ଉଦ୍ୟତ ଖଡ୍ଗକୁ ବୃଦ୍ଧାଙ୍ଗୁଷ୍ଠି ଦେଖାଇ ଜଗନ୍ମୋହନ ରହିଥିଲେ, ରହିଛନ୍ତି ଏବଂ ରହିବେ ମଧ୍ୟ ।



# ବାବାଜୀ ନାଟକ

## ପ୍ରଥମ ଅଙ୍କ

ରଙ୍ଗଭୂମି—ବାବୁ ସୁବଳ ପଟ୍ଟନାୟକଙ୍କ ବୈଠକ ଖାନା ।

( ବାବାଜୀଙ୍କର ପ୍ରବେଶ )

**ବାବାଜୀ**—ଜୟ ଜୟକାର ହେଉ ।

**ବାବୁ** - ଦଣ୍ଡବତ ମହାରାଜ (ସାଷ୍ଟାଙ୍ଗ ପ୍ରଣାମ)

**ବାବାଜୀ**—ମଙ୍ଗଳ ହେଉ, ଈଶ୍ୱର ସଦା ସୁଖୀ ରଖନ୍ତୁ ।

**ବାବୁ** -ବସିବା ହେଉନ୍ତୁ । ଏହି ଚୌକିରେ ବସନ୍ତୁ । କୁଆଡେ ଆସିବା ହେଲେ ମହାରାଜ ?

**ବାବାଜୀ**—ଆପଣଙ୍କ ଠାକୁ ଆସିଲେଇଁ ।

**ବାବୁ**—ଆପଣଙ୍କର ମଠ କୌଠାରେ ?

**ବାବାଜୀ**—ଆମର ମଠ ନାହିଁ ବାବା । ଘର ଛାଡ଼ିଲେଇଁ ମଠରୁ କି କାର୍ଯ୍ୟ, ଘର ଧନ୍ଦା ଓ ମଠ ଧନ୍ଦା ସମାନ ଅଟେ । ଯେଉଁ ସ୍ଥାନରେ ଆସନ କଲୁଁ ସେହି ଆମର ମଠ, ଆମେ ତ ଏକ ସ୍ଥାନରେ ଅନେକ ଦିନ ରହୁନା, ଦେଶ ଭ୍ରମଣରେ ଥାଉଁ । ଦୁଇଦିନ ହେଲା ଏଠାକୁ ଆସି ନଦୀକୂଳ ତୋଟାରେ ଆସନ କରିଛୁଁ । ଭୋଜନ ନ ମିଳିବାରୁ ଆପଣଙ୍କ ଠାକୁ ଆସିଗଲୁଁ ।

**ବାବୁ**—(ଦୁଇ ପଇସା ବଢ଼ାଇ) ନେବା ହେଉନ୍ତୁ ମହାରାଜ ।

**ବାବାଜୀ** ପଇସା । ଆମେ ପଇସା ଭିକ୍ଷା କରୁନା ବାବା । ଦ୍ୱାର ଦ୍ୱାର ପଇସାମାଗି ବୁଲିଲେ ସେଥିରେ ଦିନ ଯିବ । ପୂଜା, ଧ୍ୟାନ, ଭଜନ ଏହାସବୁ କରିବୁ କେତେବେଳେ ? ପୁଣି ପଇସାରୁ ଲୋଭ ଜନ୍ମେ । ସାଧୁ ସନ୍ଥଙ୍କର ପଇସା କଉଡ଼ିରୁ କି ପ୍ରୟୋଜନ ? ଭୋଜନ ମିଳିଲେ ହେଲା । ଯେବେ ଆପଣଙ୍କର ଇଚ୍ଛା ହୁଏ ତେବେ ପୂର୍ଣ୍ଣ ଭୋଜନ ଦେବାହେଉନ୍ତୁ ନଚେତ୍ ଆମେ ଆଉ କେଉଁ ଦାତାକୁ ଦେଖିବା । ସେଥିପାଇଁ ଆମର କାହୁଣ ଚିନ୍ତା ନାହିଁ । ଈଶ୍ୱରଙ୍କ କୃପାରୁ କୌଣସି ରୂପେ ମିଳିଯିବ ।

ବାବୁ—ଅସ୍ତୁ ମହାରାଜ ! ଯତ୍‌କିଞ୍ଚିତ ଭୋଜନ କରନ୍ତୁ । ଆପଣଙ୍କୁ ନ କରୁଁ ତ ଆଉ କରୁଁ କାହାକୁ ? ଆପଣଙ୍କ ପରି ଧୀର ଓ ଜ୍ଞାନୀ ସାଧୁ ଆମେ କାହିଁ ଦେଖି ନାହୁଁ ।

ବାବାଜୀ—ନାହିଁ ବାବା, ଆମେ କି ସାଧୁ ? ଆମର କି ଜ୍ଞାନ ? "କୀଟସ୍ୟ କୀଟାନୁବତେ" ଆମେ ସାଧୁ ନାମର ଯୋଗ୍ୟ ନୋହୁଁ ।

ବାବୁ—ହଁ ଆପଣ ତ ସେପରି କହିବେ, ଆମେ ତ ଦେଖି ନାହୁଁ । ଅରେ ରାମା, ରାମା—

ରାମା—ଆଜ୍ଞା (ଭିତରେ ଥାଇ)

( ରାମାର ପ୍ରବେଶ )

ବାବୁ- ଅରେ ବାବାଜୀଙ୍କ ପାଇଁ ଗୋଟିଏ ପିଢ଼ା ସଜାଡ଼ି ଆଣ ।

( ରାମାର ପ୍ରସ୍ଥାନ )

ବାବୁ—ମହାରାଜ ! ମୋ ଘରୁ ଟାଣନ୍ତୁ ( ଚିଲମ ବଢ଼ାଇ ) ସେବା ହେଉନ୍ତୁ, ଗଞ୍ଜା ସହ ?

ବାବାଜୀ—ଆମେ ତ ତମାଖୁ ଖାଉଁ ନା ବାବା ! ଗଞ୍ଜା କଣ ହେବ ? ଚିଲମ ରଖନ୍ତୁ । ଗଞ୍ଜା ଭାଙ୍ଗ ଆଦି ଆମର କିଛି ହୁଏ ନାହିଁ । ଭୋଜନ ନ କଲେ ଜୀବନ ନ ରହିବ ଏଥିପାଇଁ ଭୋଜନ ଆବଶ୍ୟକ । ନିଶା ପାଣିରୁ କି କାର୍ଯ୍ୟ ? ସେଥିରେ ମତି ଗତି ଠିକ୍ ରହେ ନାହିଁ ।

ବାବୁ - ମତି ଗତି ଠିକ୍ ରହେନା ? ତେବେ କିପରି ବୈରାଗୀମାନେ ନିଶା ଖାନ୍ତି ? ଅନ୍ୟର ଗୋଟିଏ ବଚନ ଅଛି "ଯୋଗୀ ଖାଉଁ ଯୋଗ ଧ୍ୟାନ ଧରେ ହରିକି ନାମ ସୁମରନେକୁ ।"

ବାବାଜୀ—ହଁ, ଏପରି କଥା ଅଛି । କିନ୍ତୁ ତାହା ନିଶାଖୋରଙ୍କ କଥା, ଶାସ୍ତ୍ରର ବଚନ ନୁହେଁ । ନିଶା ବଡ଼ ମନ୍ଦ, ତାହା ସ୍ପର୍ଶ କରିବାର ନୁହେଁ ।

ବାବୁ—ନା ନା ମହାରାଜ ନିଶା ଏପରି ମନ୍ଦ ନୁହେଁ । ସେଥିରେ ଗୁଣ ଦୁର୍ଗୁଣ ଦୁହେଁ ଅଛନ୍ତି । ଅଧିକ ଖାଇବାକୁ ଅବଶ୍ୟ ଦୋଷ । କେବେ କେବେ ଅଳ୍ପ ଖାଇଲେ କିଛି ଦୋଷ ନାହିଁ, ବରଂ ଭଲ ହୁଏ । ମନ ମଗ୍ନ ହୋଇ ରହେ, ଯେତେ ବଡ଼ ଶୋକ ସନ୍ତାପ ଥାଉ ସବୁ ଭୁଲିଯାଏ । ନିଶାରେ ବଡ଼ ମଉଜ ।

ବାବାଜୀ—ହଁ ସେହି କଥା ହିଁ, ସେପରି ମଉଜକୁ ଆମର କି ପ୍ରୟୋଜନ ? ନିଶା ପାଇଁ ପୁଣି ଲୋଡ଼ା ହେବ । ପଇସା ପାଇଁ ଦ୍ୱାର ଦ୍ୱାର ବୁଲିବାକୁ ପଡ଼ିବ, ସେହି

ଚିନ୍ତାରେ ଧନ ଦିବ । ଭଗବାନଙ୍କୁ ଚିନ୍ତିବ କେତେବେଳେ ? ବଡ଼ ଲୋକ-ମାନେ ମହୁଲ ଖୋଜନ୍ତି, କିନ୍ତୁ ନିଶାରେ ଆଗେ ମଜା ପଛକୁ ବଡ଼ ବେମଜା । ସାର ମଜା ଈଶ୍ୱର ଚିନ୍ତାରେ । ତେବେ ରୋଗ ପାଇଁ ଔଷଧସ୍ଥିତ ମାଦକ ଦ୍ରବ୍ୟ ବ୍ୟବହାର କରିବାର ତାଦୃଶ ଦୋଷ ହୋଇ ନପାରେ ।

( ରାମା ସିଧା ନେଇ ପ୍ରବେଶ )

ବାବୁ—ମହାରାଜ ! ସିଧା ନେବା ହେଉନ୍ତୁ ।

ବାବାଜୀ— ଆଜି ବାବା ଆନନ୍ଦ ହେଉ ମାତ୍ର ଏ ସେବାର ସାମଗ୍ରୀ ତ ପାକ କରିବାକୁ ଆମକୁ ବଡ଼ କଠିଣ । ଆମ ସଙ୍ଗରେ ଜଣେ ବୈଷ୍ଣବ ଥିଲା । ତାକୁ ଆମେ ଶିକ୍ଷା ଦେଇଥିଲୁଁ ଓ ସେ ଆମର ସେବା କରୁଥିଲା । ବର୍ତ୍ତମାନ ସେ ଆମ ସଙ୍ଗରେ ନାହିଁ ।

ବାବୁ—ତାକୁ କାହିଁକି ଛାଡ଼ିଦେଲେ, ଆପଣଙ୍କୁ କଷ୍ଟ ହଉଥିବ ।

ବାବାଜୀ - ଆମର କି କଷ୍ଟ ? ନିର୍ବାହ କର୍ତ୍ତା ଭଗବାନ୍ । ମନୁଷ୍ୟର ସଙ୍ଗ ଚିରସ୍ଥାୟୀ ନୁହେଁ, କେବଳ ଧର୍ମହିଁ ଚିରକାଳର ସଙ୍ଗୀ । ଆପଣ ଏ ସିଧାକୁ ରଖନ୍ତୁ । ଠାକୁରଙ୍କ ପ୍ରସାଦ ମୁଠିଏ ହେଲେ ଭୋଜନ କରି ଭଜନ କରିବୁଁ ।

ବାବୁ—ମହାରାଜ ! ପ୍ରସାଦ ସମସ୍ତେ ସେବା କଲେଣି, ଆପଣଙ୍କ ସକାଶେ ଆଜ ସେବେଇ ହେଲେ ହବ । (ରାମା ପ୍ରତି) ଏ ସିଧା ପୂଝାରୀକୁ ଦେଇ ସେବେଇ କରିବା ପାଇଁ କହିଦେ ।

ରାମା ସେ ତ ଶୋଇବାକୁ ଯାଉଛି, ମୁଁ କହିଲା ମାତ୍ରକେ ତେଇଁବ, ମୋ ଉପରକୁ କାମୁଡ଼ି ହବ ।

ବାବୁ— ଅଚ୍ଛା ରହ, ମୁଁ ତାକୁ ଡାକି ଦେଉଛି । ପୂଝାରୀ ! ପୂଝାରୀ !

( ଆନନ୍ଦ ପଣ୍ଡା ପୂଝାରୀର ପ୍ରବେଶ )

ବାବୁ—ପୂଝାରୀ : ଏ ସିଧା ନେଇ ଠାକୁର ଆଡ଼େ ନୈବେଦ୍ୟକରି, ମହାରାଜ ଭୋଜନ କରିବେ, ଚଞ୍ଚଳ କରିବ ।

( ପୂଝାରୀ ସିଧା ନେଇ ପ୍ରସ୍ଥାନ )

ବାବୁ— ମହାରାଜ ! ସେବେଇ ହଉଁ ହଉଁ କିଞ୍ଚିତ ବିଳମ୍ବ ହେବ, ଏଥି ମଧ୍ୟରେ ଭଜନ କରନ୍ତୁ, ଆମ୍ଭର କର୍ଣ୍ଣ ପବିତ୍ର ହେଉ ।

ବାବାଜୀ—ଅଚ୍ଛା ବାବା !

ଭଜନ—ରାଗ ଝିଁଝିଁଟ-ତାଳ ଏକତାଲି ।

ମୋର ଦୀନବନ୍ଧୁ ଦୟାଲ ଅନ୍ୟ ନାହିଁ କେହି ।
ଅଖିଳ ଅନନ୍ତ ନାଶଶୀଳ, ଅବିନାଶୀ ସେହି ।
ଜଗତ ପିତା ଜଗତ ମାତା ଭକତ ଭାବଗ୍ରାହୀ ।
କରନ୍ତି ଧ୍ୟାନ ପତିତ ତ୍ରାଣ ଭଜେ ତାଙ୍କୁ ଯେହି ।

ବାବୁ—ଆହା ! ଆପଣ ତ ବେଶ୍ ଭଜନ କରନ୍ତି, ବାଜା ହେଲେ ଆହୁରି ଭଲ ହୁଅନ୍ତା । ଆଚ୍ଛା, ଆମେ ଜଣେ ବାବୁଙ୍କୁ ଡକେଇ ଆଣୁଚୁ, ସେ ବଜେଇବେ ଆପଣ ଗାଇବେ । ରାମା ! ଯଶୁବାବୁଙ୍କୁ ଡାକି ଆଣ ତ, କହିବୁ ଏଖୁଣି ଆସିବେ ।

( ରାମାର ପ୍ରସ୍ଥାନ ଓ ବାବୁ ଯଶୁ ଭଟ୍ଟାଚାର୍ଯ୍ୟଙ୍କର ପ୍ରବେଶ )

ବାବୁ—ଆସୁନ୍ ଭଟ୍ଟାଚାର୍ଯ୍ୟ ମହାଶୟ ଆସୁନ୍ । ପ୍ରାତଃ ପ୍ରଣାମ ।

ଯଶୁ—ପ୍ରାତର୍ନମସ୍ତୁ । ଦୁପର ବେଲାୟ କୋରଟଲବ୍ କେନ ?

ବାବୁ—ଏଇ ବାବାଜୀ ବେଶ୍ ଭଜନ କଚ୍ଚେନ, ଓଁର ଆହାରେର ଯୋଗାଡ଼ ହଚେ । ଏର ମଧ୍ୟେ ଗାନ କରାଯାକ୍ । ଆପନି ବାଜାବେନ୍, ଉନି ଗାଇବେନ୍ । ଓରେ ରାମା ତମାଖୁ ଆଣ, ତବଲା ଦେ ।

( ରାମା ତମାଖୁ ତବଲା ଦେଲାରୁ )

ବାବୁ—ଆଗେ ତାମାକଟା ଖେୟେନନ୍ । ପ୍ରତି ରବିବାରେ ପାଶା ଖେଳ ହୟ, ଏ ରବିବାର ପାଶା ବନ୍ଦ କରେ ଏଇ ଆମୋଦ୍ କରାଯାକ୍ ।

ଯଶୁ—ମଦ୍ ନା ହଲେ କି ଆମୋଦ୍ ହୟ । କାଲ୍ ଆମାଦେର ଖୁବ୍ ହୟେଛିଲ, ଆପନି ଛିଲେନ୍ କୋଥାୟ ? ଶନିବାରେର ରାତ୍ଟା ବୃଥାୟ କାଟାଲେନ୍ ।

ବାବୁ—ସମସ୍ତ ବୃଥା ଯାଉନାଇ, ଅଲ୍ପ ଅଲ୍ପ କିଛୁ ହୟଚେ । ଓ ଶନିବାର କତକ ଗୁଲୋ ଲୋକ ଜଡ଼ ହୟେ ଜଡ଼ ଗୋଲ୍ କରଲେ, ଏକେ ଦୁର୍ନାମ ହୟ । ଚୁପ୍‌ଚାପ୍ ଯା କରାଯାୟ ତାଇ ଭାଲ । ଏଖନ ହୟ କେମନ କରେ, ଉନି ଯେ ଆଛେନ ।

ଯଶୁ—ଆଚ୍ ଓ କି ଜାନେ, ବେଦାନାର ଶରବତ୍

ବାବୁ—ଠିକ୍ ବଲେଛେନ୍ (ବାବାଜୀ ପ୍ରତି) ମହାରାଜ ! ଏ ବାବୁ ଖରାରେ ଆସିଛନ୍ତି, ଆଗେ ତାଙ୍କୁ ଟିକିଏ ବେଦନାର ଶରବତ୍ ଦେଉଁ । ରାମା ! (ଆଖିରେ ଠାର) ଶରବତ୍ ବୋତଲ ଓ ଗିଲାସଟା ଦେ । ଦାନ୍ତ ଦ୍ୱାରା ଲଗେଇ ଦେଇ ଆ ।

( ରାମା ବୋତଲ ଓ ଗିଲାସ ଦେଲାରୁ ବାବୁ ଗିଲାସରେ ସୁରା ଢାଳି )

ବାବୁ—ଓନ୍ ଡଷ୍ଟାର୍ଡ଼ ମହାଶୟ, ଶରବତ୍ ଖାନ୍ । ଅର ଦୁ ଡୋଜ ଲଗାତେ ହବେ ।

ଯଣ୍ଡୁ—(ପାନ କରି) ଆଉ ନଷ୍ଟା ଭାଲ୍ କେର ଯେ ଏଖନୋ ବାଜ୍ଞଅଛେ । ଆଉ ଖେଲେ ବାଜାତେ ପାରବ୍ ନା ।

ବାବୁ—ତବେ ବୋତଲଟା କି ଆମି ଏକାକୀ ନିଃଶେଷ କରବ୍ ?
ଆଚ୍ଛା (ପେଟରେ ହାତ ମାରି) ଆମାର ପେଟ୍‌ଟା ଫେଁପେଁଚେ କି ଭଲ ବଲୁନ୍ ଦେଖି ।

ଯଣ୍ଡୁ—ଏଭ ଶରବତ୍ ବେଶ୍ ବେ ଖାନ୍, ଏଟନି ଭଲ ହୟେଯାବେ ।

ବାବୁ—କେମନ୍ ! ଏତେ ଭଲ ହୟେ ଯାବେ ? ତବେ ଖାଇ ।
(ବାବୁଙ୍କର ପୁନଃ ପୁନଃ ସୁରାପାନ) ।

ଯଣ୍ଡୁ—(ତବଲା ନେଇ) ମହାରାଜ ! ଭଜନ କରନ୍ତୁ ।

ଭଜନ—ରାଗିଣୀ (ଜଙ୍ଗଲା ତାଲ ଠୁମରି)

ପତିତପାବନ ହତେ କି ଦର୍ଶନ କରିବ ଏ ପାପୀ ପାଦ ଭ୍ରମର ।
ସେହି ଯେ ଚରଣ ଅମୃତ ପୂରଣ କୋଟି କୋଟି ପାପ ସନ୍ତାପହାରୀ ।
ମୋହରେ ଜଡ଼ିତ ହୋଇଛୁ ମୋ ଚିତ୍ତ ଜଟିଳ କୁଟିଳ ଘୋର ସଂସାରୀ ।
ଧିପାୟ ନ ଦ୍ୱି ତ ଭୁବନ ବ୍ୟାପିତ ରଖ ହେ ଅଧମ ଭକ୍ତର ଭାରୀ ।
ଯେ ଇଚ୍ଛା ସେ ଦଣ୍ଡ ଦେଇ ପାପ ଖଣ୍ଡ କର ମୋତେ ତବ ସେବନକାରୀ ।
କରିଛ କରୁଣା ଏତକ କାମନା ପୂର୍ଣ୍ଣ କର ଶୁଣ ମୋର ଗୁହାରି ।

( ବାବୁଙ୍କର ଉନ୍ମତ୍ତ ଭଙ୍ଗୀ ଓ ନୃତ୍ୟ )

ଯଣ୍ଡୁ—ଏକ୍‌ଟୁ ଭଲ କରେ ନାଚୁନ ନା ଆମି ଗତ୍ ବାଜାଇ ।

ବାବୁ—ହୁଁ । ବାଜା ନାଚୁଚି, ରସ୍ ବାବା, ବାଇ ସେଜେନି ।
( ବାବୁ ବାଇବେଶ ହୋଇ ନୃତ୍ୟ ଓ ଚିତ୍କାର କରି ଭୂମିଗତ )

ବାବାଜୀ—(ସ୍ୱଗତ) ମୂର୍ଖଙ୍କର କଥା ମୂର୍ଖଙ୍କରେ ଅଛି । ଦେଖ୍ ଦେଖ୍ କଣ ହେଲା ! କି ଦୁଃଖର ବିଷୟ, ଏପରି ବ୍ୟକ୍ତିର ଏପରି ଆଚରଣ !

ଯଣ୍ଡୁ—ମହାରାଜ ! ବାବୁ ଘୁମ ଗେଲା । ହାମ ଯାତେ ହେଁ, ଆପ ଭୋଜନକୁ ଯାଓ ।
ପୂଜେଣ୍ଡକୁ ବୋଲ୍ ଦେତେ ହେଁ । ପୂଜେଣ୍ଡା, ପୂଜେଣ୍ଡା ।
( ଆନନ୍ଦ ପଣ୍ଡାର ପ୍ରବେଶ )

ଯଣ୍ଡୁ—ପୂଜେଣ୍ଡା ! ମୁଁ ଯାଉଚି, ତୁ ବାବାଜୀଙ୍କୁ ଖାଓ୍ୟାଇବୁ । ହଁମା ! ବାବୁଙ୍କୁ ଜାଗିଥିବୁ ।

ପୂଜାରୀ—ଆସ ମହାରାଜ, ଠାକୁର ପିଣ୍ଡାକୁ ଆସ ।

(ପ୍ରସ୍ଥାନ)

●

# ଦ୍ୱିତୀୟ ଅଙ୍କ

ରଙ୍ଗଭୂମି—ବାବୁଙ୍କ ଠାକୁର ପିଣ୍ଡା

ସୁଦାସ— ମହାରାଜ ! ଏଇଠାରେ (ପିଣ୍ଡାର ଏକପାର୍ଶ୍ୱରେ) ବସ ।
(ଏହା କହି ଅଗ୍ରସର)

( ଦାମା ପିଣ୍ଡାର ଅନ୍ୟ ପାର୍ଶ୍ୱରେ ପ୍ରବେଶ )

ସୁଦାସ—ଦାମା ! ଏ ବାବାଜୀଙ୍କୁ କୁଆଡ଼େ ତାଙ୍କ ସେବାସେଇ କରି ଖୋଇବ । ଆମ ବାବୁ ଯେ, ଯିଏ ଯାହା ମାଗିଲା କହିବ 'ଦେ' । ଆମ ଦରମାହା ବେଳେ ବେଳକୁ ଟଣାଟଣି, ପାଉନାବାଲା କୋଡ଼ିଏଥର ଦଉଡ଼ିଲେ ପାଇବାର ମୁସ୍କିଲ, ବାବାଜୀ ବେଳକୁ ଦାତା କେଣ୍ଟ ଓ ବଡ଼ଲୋକରେ ବାକି ନାହିଁ; ଭଲ ଏ କେଉଁ ରୀତି ? ଯେ ଟେକିଟାକି କହିଲା ସେ ନେଇ ଚାଲିଗଲା, ଆମେ ଜଲବାଙ୍କ ପରି ବସିଥିବୁ ! ସେ କଥା ଯା ହେଉ ଏଇଟା ଏତେବେଳକୁ କୁଆଡ଼ୁ ଆସିଲା ? ଓଳିଯୋଡ ଗଣ୍ଡି ଗଣ୍ଡି ଟିକିଏ ଶୋଇଥିଲି, ଏଇଟା ଆସି କଣ୍ଟକ ହେଲା । ରହ ତାକୁ ହିନସ୍ତା କରି ମାରୁଛି ।

ଦାମା— ଶୁଣିଛୁ 'ସ୍ୱର୍ଣ୍ଣକୁ ଜଳୁଣି ନାହିଁ । ବଡ଼ ଲୋକଙ୍କୁ ଉତ୍ତର ନାହିଁ' ସେମାନଙ୍କୁ ସବୁ ସାଜେ । ତୁ ଯେବେ ବାବାଜୀପାଇଁ ସିଧା ଆଣି ତାକୁ ଖାଇବାକୁ ନ ଦେବୁ, ବାବୁ ଶୁଣିଲେ ତୋର କି ଦଶା ହେବ, ଆଜି ତୋ କପାଳରେ ଗାଳି ଗୁଣ୍ଡିଏ ଅଛି ।

ସୁଦାସ—ବାବୁ ଆଉ କାହାନ୍ତି ଯେ ଧନ ! ମଦରେ ମସ୍ତ ଶୋଇଲେଣି, ଆଉ ଉଠି କୌଣଆକୁ ?

ଦାମା—ବୁଝିଲୁ, ବୈଷ୍ଣବ ଅହାରମୁଖା ହୋଇ ଅସିଛ, ଖାଇବାକୁ ନ ଦେଲେ ତାହାର କ୍ରୋଧ ତୋ ଉପରେ ପଡ଼ିଯିବ ।

ସୁଦାସ—ହଃ, ଏପରି କେତେ ବାବାଜୀ ଦେଖିଛି । କେତେ ଜଣଙ୍କୁ ହିନସ୍ତା କରିଛି । ବ୍ରାହ୍ମଣ ଉପରେ କୁଆଡ଼େ ବଷ୍ଟମର କ୍ରୋଧ ପଡ଼ିବ ! ସେ ଯେ ମୋ ଜନ୍ମ ଭଙ୍ଗେଇଲା ସେମନ୍ତେ ମୋ କ୍ରୋଧ କି ତା ଉପରେ ନ ପଡ଼ିବ କି ? ଅଚ୍ଛା ରହ, ମୁଁ ଆଗେ ଟିକିଏ ରଙ୍ଗ କରେ ।

ଢାମା—ହଇ ବାବୁ, ତୋ ମନକୁ ଯା ଆସେ ତା କର, ତୋତେ କିଏ ପାରିବ ?
ବାବୁଙ୍କୁ ତ ପାଠ ପଢ଼େଇ ଦେଉ, ଆମେ କି ଛାର !

ପୂଝାରୀ—ମହାରାଜ ! ଅନ୍ନ ଅଛି, ତିଅଣ ନାହିଁ । କଣ ଦେଇ ଖାଇବ, ଶୁକୁଆ ହେବ ?

ବାବାଜୀ—ହଉ ବାବା, ଶୁଖା ରୁଖା ଯାହା ଅଛି ପାଇଦେବା ।

ପୂଝାରୀ—ଶୁଖା ରୁଖା କିଛି ନାହିଁ ଯେ-ଶୁକୁଆ ।

ବାବାଜୀ—ଶୁକୁଆ କଣ ବାବା, ଆମେ ତ କେବେ ଖାଇ ନାହୁଁ ।

ପୂଝାରୀ—ଶୁକୁଆ ଜାଣ ନା, ଆଉ ତେବେ କଣ ଜାଣ ? ମାଛର ଶୁକୁଆ ହୁଏ, ସମସ୍ତେ ଖାଆନ୍ତି । ଏବେ ଅନେକ ବ୍ରାହ୍ମଣ ବୈଷ୍ଣବ ଘୁଙ୍ଗା ନୁଚେଇ ସେରେଇ ପାଉ ଦେଉଛନ୍ତି ।

ବାବାଜୀ—ଆରେ ! ବୈଷ୍ଣବ ମାଛ ଶୁଖୁଆ ଖାନ୍ତି ? ଏକଥା ଜାଣୁ ନା !

ପୂଝାରୀ—ଆଉ କଣ ସାଗୁଆଡ଼ ଖାଇବ ?

ବାବାଜୀ—ହଁ ତା ହେବ, ସେଇ ହେଲେ ଆମର ଢେର୍ ।

ପୂଝାରୀ—(ଢାମା ପ୍ରତି) ମଲା ! ଏକଣ ବନ୍ଧୁଚ, ମାଛ ଖାଏନା ସାଗୁଆଡ଼ ଖାଏ ।

ଢାମା—ବୁଝି ପାରିଲୁ ନାହିଁ ପରା !

ପୂଝାରୀ—ନ ବୁଝିଲା ନାହିଁ ଭଲ ହେଲା, ଦୋଷ ତାର ମୁଣ୍ଡରେ ରହିଲା ।
( ବାବାଜୀ ଆଗରେ ପୂଝାରୀ ପତ୍ର ପକାଇ ଢାମା ସହିତ ପ୍ରସ୍ଥାନ ) ।

ବାବାଜୀ—ପୂଝାରି ବାବା ! ପତ୍ର ଦେଇ ଏତେବେଳ ଯାଏ କୁଆଡ଼େ ରହିଲ ?
ଯେବେ କିଛି ନାହିଁ ତେବେ କହୁଥା ଆମେ ଚାଲିଯିବା ।
( ପୂଝାରୀ ଗୋଟିଏ ହାଣ୍ଡିରେ ପଲମ ଘୋଡ଼ାଇ ପ୍ରବେଶ )

ପୂଝାରୀ—ହେଇ ମହାରାଜ ! ଏଥିରେ ଉତ୍ତମ ପ୍ରସାଦ ଅଛନ୍ତି, ଆପଣ ସ୍ୱହସ୍ତେ ପରଶି ସେବା କରନ୍ତୁ ।

ବାବାଜୀ—ଆଚ୍ଛା ବାବା ( ପଲମ କାଢ଼ନ୍ତେ ଗୋଟିଏ କୁକୁଡ଼ା ବାହାରିଲା, ବାବାଜୀ ଚମକି ଉଠି ) ଇଏ କଣରେ ବାବା !

ପୂଝାରୀ—ମହାରାଜ, ଆପଣ ସାଗୁଆଡ଼ ସ୍ୱୀକାର କରିବାରୁ ମୁଁ କୁକୁଡ଼ାଟିଏ ଗୋଟା ପଣେ ରୋଷ୍ଟ (କବାବ) କରି ଆଣିଥିଲି, ସେହିପରି ବାବୁ କେବେ କେବେ ଖାଆନ୍ତି ।

ସେ ତ ଆପଣଙ୍କ ହାତ ଲାଗିବା ମାତ୍ରକେ ପ୍ରାଣପାଇ ବଞ୍ଚି ଉଠିଲା, ମୋର କି ଦୋଷ ? ମହାରାଜ, ଆପଣଙ୍କର ଅପାର ମହିମା ! କୁକୁଡ଼ାକୁ ମାରି ରାନ୍ଧିଥିଲି, ସେ ପୁଣି ଜୀଇଁ ଉଠିଲା । ଓହୋ ! ଏପରି ତ କେବେ ଦେଖା ନ ଥିଲା ।

( ରଘୁ ସିଂହର ପ୍ରବେଶ )

ବାବାଜୀ—ଆରେ ତୁ ଆଗ ଚୋରି କରି ଜାଣିଲୁ। କୁକୁଡ଼ାଟାଏ ଆଣିଦେଲୁ, ମିଥ୍ୟାକଥା ଗୁଡ଼ାଏ କହୁଚୁ, ଆହୁରି ଟାହୁଲି କରୁଚୁ । କ୍ଷୁଧାର୍ତ୍ତକୁ ସନ୍ତେଇଲୁ ? ଆରେ ତୁ ବଡ଼ ଅଜ୍ଞାନୀ !

ରଘୁ—ସତେ ପୂଝାରୀ, ତୁମେ କଣ କଲ, ଏହା କି ମଣିଷ କରେ ! କ୍ଷୁଧାର୍ତ୍ତ ସାଧୁକୁ ସନ୍ତେଇଲ ! ଓହୋ ଏଡ଼େ ଅଜ୍ଞାନ ! ତୁମେ ବ୍ରାହ୍ମଣଟିକି ? ତୁଚ୍ଛା ପଇତା ପକେଇ ବ୍ରାହ୍ମଣ, ନା ଧର୍ମ କର୍ମରେ ବ୍ରାହ୍ମଣ ? କଳିକାଳର ବ୍ରାହ୍ମଣଗୁଡ଼ାକ କଣ ହେଲେଣି ! ଧର୍ମ କର୍ମକୁ ମହତ୍ତ୍ୱ ମର୍ଯ୍ୟାଦାକୁ ଟିକିଏ ଦୃଷ୍ଟି ନାହିଁ, ଗାଳ ମାଡ଼ ଖାଇ ବାରଦୁଆରେ ପତର ପକେଇଲେଣି, ବାର ଅଜାତ ହେଲେଣି । ଠାକୁର ପିଣ୍ଡାକୁ ବୈଠି କୁକୁଡ଼ାଟାଏ ଆଣିଲ ? ତୁମର ଜାତି ରହିଲାଟିକି ? ଏଥିରେ ଆଉ ଦେବତା ରହିବେଟିକି ?

ପୂଝାରୀ—ବାବୁ ଯେ କୁକୁଡ଼ା ପାଳି ଥଅନ୍ତି, ମୁଁ ଛୁଇଁଲି ବୋଲି ଦୋଷ ହେଲା ? କୁକୁଡ଼ା ଯେ ରାନ୍ଧିବାକୁ ପଡ଼େ ।

ରଘୁ—(କୁପିତ ହୋଇ) କଣ କହିଲୁ ଫେର ତ କହ, ବାବୁ କୁକୁଡ଼ା ଖାଆନ୍ତି ? ମୁଁ କଣ ବାବୁଙ୍କୁ ଜାଣେ ନା ? ତାଙ୍କର ପୂଜାପାଠ ଦାନ ଧ୍ୟାନ ଦେଖି, ବ୍ରାହ୍ମଣ ବୈଷ୍ଣବ ସମସ୍ତେ ତାଙ୍କର ପ୍ରଶଂସା କରନ୍ତି, ତୁ ତାଙ୍କୁ ନିନ୍ଦା କରୁଚୁ ? ସେ କଣ ଇଂରେଜି ପଢ଼ା ବାବୁ କି ? ଏବେ ତ ସେମାନଙ୍କ ମଧ୍ୟରେ ପୁଣି କଲିକତାରେ କେତେ ମଦ ମାଉଁସ ଖାଉ ନାହାନ୍ତି, ସତ୍ୟ ଜ୍ଞାନୀ ଓ ଧର୍ମୀ ହୋଇ ବାହାରିଚନ୍ତି । ଏପରି କେବେ ଦେଖା ନ ଥିଲା, ଚୋର ପରି ମୂର୍ଖ ଅଜ୍ଞାନୀ ପରି । ବାବୁଙ୍କର କେଉଁ ଗୁଣକୁ ତୁ ସରି କହିଲୁ, ସେ ଗୋଟାଏ ଅଧେ ଭୁଲ କଥା କଲେ ବୋଲି ତୁ ସେଇଥି କରିବୁ ? ଦେଖ ମହାରାଜ ! ଆପଣଙ୍କୁ ଏତେ ସନ୍ତେଇଲା ପୁଣି ବାବୁଙ୍କର ନିନ୍ଦା କରୁଚି, ଚାଲନ୍ତୁ ବାବୁଙ୍କୁ ଜଣେଇବା ।

ବାବାଜୀ—ନାହିଁ ବାବା, ବାବୁଙ୍କୁ ଜଣେଇବା ନାହିଁ । ବାବୁ ଶୁଣିଲେ ରାଗ ହୋଇ ତାକୁ ଦଣ୍ଡିବେ ବା ବାହାର କରିଦେବେ, ଗରିବ ବିଚାରା ମରି ପଡ଼ିବ । ସେମାନେ ମୂର୍ଖ, ମୂର୍ଖଙ୍କର କିଛି ଦୋଷ ଦେଖିଲେ ତାହା ଲୁଚେଇବା ଦୂରେ

ଥାନ୍ତି ବଜାରରେ ନାଚନ୍ତି ଓ କନ୍ଦା କାଟି ବୁଲନ୍ତି । ଆମେ ତାଙ୍କୁ ବୁଝେଇ ଦେଇଥିବା; ସେ ଏପରି ଦୁଷ୍କର୍ମ ଆଉ କରିବ ନାହିଁ । ବାବୁଙ୍କୁ ଜଣେଇଲେ କଣ ହେବ ? ବୁଝିଲ ପୂର୍ଣ୍ଣାଶ୍ର ବାବା ! କ୍ଷୁଧାର୍ତ୍ତିକୁ ସନ୍ତ୍ରେଇବା, ମୂର୍ଖକର ନିନ୍ଦା କରିବା ଓ ମିଥ୍ୟା କହିବା ବଡ଼ ଦୋଷ ଏବଂ ପାପ ଅଟେ । ଏଥିପାଇଁ ପରକାଳରେ ଦଣ୍ଡ ଭୋଗିବ । ଏପରି କୁକର୍ମ ଆଉ କେବେ କରିବ ନାହିଁ । ବଡ଼ ହେବା ବେଳେ 'ମିଥ୍ୟା ଭାଷଣଂ ନ କର୍ତ୍ତବ୍ୟଂ' ଯେ ପ୍ରତିଜ୍ଞା କରିଥିଲ ତାହାକୁ ଦୃଷ୍ଟି ରଖ । ସେତେବେଳର ଦଶ ପ୍ରତିଜ୍ଞା ନ ପାଳିଲେ ପ୍ରକୃତ ବ୍ରାହ୍ମଣ ହୋଇ ନ ପାରିବ ।

ଭଗୁ — (ଅଶ୍ରୁ ପୂର୍ଣ୍ଣ ଲୋଚନେ) ଆହା ! କେଡ଼େ ଦୟାଳୁ କେଡ଼େ ବୋଧ ! ପୂର୍ଣ୍ଣାଶ୍ର ! ତୁ କି ପୁରୁଷ ସଙ୍ଗରେ କି ବ୍ୟବହାର କଲୁରେ ! ତୋର ଶରୀର ଫାଟି-ଯିବରେ ! (ବାବାଜୀ ପ୍ରତି) ମହାରାଜ ! ମୋ କପାଳରେ ଚରଣ ପଡ଼ିଲେ ପାତକୀଙ୍କର ଉଦ୍‌ଯୋଗ କରି ଯାଆନ୍ତୁ ।

ବାବାଜୀ — ନାହିଁ ବାବା ! ପାକ କରିବା ତ ଆମକୁ ପଟେ ଭ୍ରାନ୍ତ । ମଠକୁ ଯାଉଛେଁ ମେହନ୍ତଠାରେ ମୁଠିଏ ପ୍ରସାଦ ପାଇବା । ତୁମେ ମନରେ କିଛି ଦୁଃଖ ନ କର । ଆନନ୍ଦ ରହ ବାବା ! ପୂର୍ଣ୍ଣାଶ୍ର ବାବା ! ଦୁଃଖ ନ କରି ଆମ କଥାକୁ ଗୁରୁବଚନ ତୁଲ୍ୟ ମାନିବ । ଆଚ୍ଛା ଯାଉଛେଁ । ମଙ୍ଗଳ ହେଉ ।

( ବାବାଜୀଙ୍କର ପ୍ରସ୍ଥାନ )

ଭଗୁ — ଦେଖିଲୁ ପୂର୍ଣ୍ଣାଶ୍ର ! ସାଧୁ ଅହଙ୍କାର ଟିକିଏ ନାହିଁ । ତୁମକୁ ପୁଣି କଲ୍ୟାଣ କରିଗଲେ ।

ପୂର୍ଣ୍ଣାଶ୍ର — ହଁ ହଁ ଅତି ଉତ୍ତମ ସାଧୁ, ଦେବତା ସମାନ ତ ! ତାଙ୍କୁ ଯା ମୁଁ ସନ୍ତ୍ରେଇଲି । ସେ ପଡର ଉପରୁ ଉଠିଗଲେ, ବଡ଼ ଦୁଷ୍କର୍ମ କଲି । ମତେ କି କୁବୁଦ୍ଧି ଘଟିଲା । ଏତେବେଳେ ମନ ବଡ଼ ଚଞ୍ଚଳ ହେଉଛି, ମୁଁ ଚଣ୍ଡାଳ କର୍ମ କଲି, ମୋର ଆଉ ଭଲ ଦଶା ନାହିଁ । (ସ୍ୱହସ୍ତେ ଚପେଟାଘାତ ଓ ଅଶ୍ରୁପାତ) ।



# ତୃତୀୟ ଅଙ୍କ

ରଙ୍ଗ ଭୂମି—କପିଳ ମଠର ଭାଣ୍ଡ ଘର

( ବାବାଜୀର ପ୍ରବେଶ )

ବାବାଜୀ—ମଠରେ କେହି ଅଛ ବାବା !

( ବୀର ସିଂହର ପ୍ରବେଶ )

ବୀର—ଜଣ ମହାରାଜ ! ଦଣ୍ଡବତ !

ବାବାଜୀ—ମଙ୍ଗଳ ହେଉ, ବାବା ଭୋଜନ ମାଗୁଚେଇଁ ।

ବୀର - ମହନ୍ତ ମହାରାଜ ପଲଙ୍କ ଲାଗି ହୋଇଛନ୍ତି, ଏତେବେଳେ ତାଙ୍କ ଶ୍ରୀମୁଖକୁ ଯାଇ ପାରିବ ନାହିଁ, ଅଧିକାରୀ ଆସୁଚନ୍ତି, ତାଙ୍କୁ ଭୋଜନ ମାଗିବ । ମହାରାଜ ! ମୁଁ ତ ମହନ୍ତଙ୍କ ଆଶା-ବରଦାର, ମୋ ଦେହ କଣ ହବ ?

( ଅଧିକାରୀଙ୍କର ପ୍ରବେଶ, ଝୋଲି ହାତରେ ନାମାବଳୀ ଦେହରେ, ତିଳକ ଛାପା ମସ୍ତକରେ )

ଅଧିକାରୀ—ଗୌରାଙ୍ଗ ହେ, ଗୌରାଙ୍ଗ ହେ ।

ବାବାଜୀ—ଜୟ ଜୟକାର ଅଧିକାରୀ ବାବା । କ୍ଷୁଧାର୍ତ୍ତ ଅଭ୍ୟାଗତର କିଛି ଚର୍ଚ୍ଚା ହେବ ?

ଅଧିକାରୀ—( ମାଳତୀର ଆଗମନ ଦେଖି ) ମହାରାଜ ! ଦ୍ୱାରେ ବସ, ଭିତରକୁ କପର ଆସିଲ ?

ବାବାଜୀ—ଆଚ୍ଛା ବାବା ( ଦ୍ୱାରେ ବସିଲେ )

( ମାଳତୀର ପ୍ରବେଶ )

ଅଧିକାରୀ—ଆଜି ଏତେ ଡେରି ଡେରି କାହିଁକି ?

ମାଳତୀ—ନା, ମୁଁ କେତେବେଳୁ ଆସିଲିଣି ।

ଅଧିକାରୀ— କାହିଁ ମୁଁ ତ ତୋତେ ଦେଖି ନାହିଁ, କୋଉଠି ଥିଲୁ ?

ମାଳତୀ—(ହସି ହସି) ମହନ୍ତଙ୍କ ପାଖରେ ଥିଲି ପରା, ଗୋଡ଼ ଘଷି ଦେଉଥିଲି । ହେଇତ, ଏ ଶାଢ଼ୀ ଆଜି ମହନ୍ତ ଦେଲେ (ଶାଢ଼ୀ ଅଞ୍ଚଳରୁ ବାହାର କରି) ଆଉ ଶାଢ଼ୀ, ସାତଟଙ୍କାରୁ କମ ହୋଇଚ ।

ଅଧିକାରୀ—ଆଚ୍ଛା, ବେଶ୍ ଖୁସିର କଥା । ନୂଆ ଶାଢ଼ୀ ନ ପିନ୍ଧି ନୁଚେଇଛୁ କାହିଁକି ? ତୁ କଣ ମ୍ଲେଚ୍ଛରଣୀ କି ?

ମାଲତୀ—ନାହିଁ ମ, ଆଜି ବାର ନୁହେଁ ପରା ! ପିନ୍ଧିବା ପାଇଁ ମହନ୍ତ କହୁ ନ ଥିଲେ କି ? ବାର ନ ଥିବାରୁ ପିନ୍ଧିଲି ନାହିଁ, ଗୁରୁବାର ଦିନ ପିନ୍ଧି ଆସିବି ।

ଅଧିକାରୀ—ହଉ ତେବେ, ଯେପେଇ ଘର ଆଡ଼କୁ ଆ, ପ୍ରସାଦ ପାଇବୁ ।

ମାଲତୀ—ମୁଁ ଘରକୁ ଯାଉଛି, ଶାଢ଼ୀ ଘରେ ରଖି ଆସେଁ ।

ଅଧିକାରୀ—ମ, ତୋ ଶାଢ଼ୀ କିଏ ଛଡ଼େଇ ନଉଛି କି ? ପ୍ରସାଦ ଶୁଖିଯିବେ, ଆଗେ ପ୍ରସାଦ ପାଇବୁ ଆ, ପଛେ ଘରକୁ ଯିବୁ, ଏକା ନହେଲେ କାମ ସାରିକରି ଯା ।

ମାଲତୀ—ତେବେ ପ୍ରସାଦ ଦିଅ ଘରକୁ ନେଇଯିବି । ମୁଁ ଅଧିକ ଖାଇବି ନାହିଁ ।

ଅଧିକାରୀ—କାହିଁକି କହୁନ ? ମୋ ରାଣ ଟି ସତ କହୁବୁ ?

ମାଲତୀ—(ହେଟ ବଦନେ) ଆଜି ମୁଁ ଗୋଟିଏ ଦୋଟି ପିଠା ଖାଇ ଆସିଚି, ପ୍ରସାଦ ପଛେ ପାଇବି ।

ଅଧିକାରୀ—ଏହୁ ପିନା ! ଆ ଅଳପ ମୁଠିଏ ଖାଇବୁ ଆଉ ମୁଠିଏ ତୋ ମା ପାଇଁ ନେଇ ଯିବୁ । ଆ ଆ ମୋ ରାଣ ।

ମାଲତୀ—ଚାଲ ଯାଉଛି, ଏତେ ରାଣ କାହିଁକି ପକଉଛ ?

ଅଧିକାରୀ—(ବୀର ପ୍ରତି) ଆମେ ଯାଉଁ, ତୁ ବାବାଜିକୁ କହିଦେବୁ ପଙ୍ଗତ ବଢ଼ିଲାଣି, ଆଉ କିଛି ମିଳିବ ନାହିଁ । (ଅଧିକାରୀ "ଗୌରଙ୍ଗ ହେ" ପୁନଃ ପୁନଃ ଉଚ୍ଚାରି ମାଲତୀ ସହିତ ପ୍ରସ୍ଥାନ)

ବୀର—(ସ୍ୱଗତଃ) ଓହୋ, ଧର୍ମ ଉଠିଗଲା !

(ରାମ ଦାସର ପ୍ରବେଶ ଗଞ୍ଜା ଖାଇ ଖାଇ)

ବାବାଜୀ—(ରାମ ପ୍ରତି) ମହାରାଜ ! ଅଧିକାରୀ ତ କିଛି ଉତ୍ତର ନ ଦେଇ ଚାଲିଗଲେ, ଆମ କଥା କିଛି ହବ ?

ରାମ—(ଗଞ୍ଜା ଚିଲମ ବଢ଼ାଇ) ନିଅ ମହାରାଜ !

ବାବାଜୀ—ଆମର ତା ହୁଏନା, ସେ ସବୁର ଆମେ କିଛି ଧାରୁ ନା ।

ରାମ—ଏସବୁ କିଛି ହୁଏ ନା ! ଆଉ ତେବେ କଣ ହୁଏ ? ଆଉ ତୁମେ କି ସାଧୁ ! (ବୀର ସିଂହ ନିକଟକୁ ଆସି) ଏ ବାବାଜୀ କିଛି ନୁହେଁ । ଚୋର ପରି ଉଞ୍ଚ କଣେ ।

ବୀର—ହଉ ଆମର ତା ସନ୍ଦେହ । ତୁମେ ଏ ବାବାଜୀ ପାଇଁ ମୁଠିଏ ପ୍ରସାଦର ଉଦ୍‌ଯୋଗ କରିଦିଅ । ଅଧିକାରୀ ମନା କଲେ, ତୁମେ ଭିକ୍ଷା ଦଆକର । ଭିକ୍ଷୁ ବ୍ୟକ୍ତି ଦୟାର ପାତ୍ର, ଘୃଣାର ପାତ୍ର ନୁହେଁ ।

ରାମ—ସତ୍ୟ, କନ୍ତୁ ଧ୍ୱଜ ପାଞ୍ଚଜଣ ବାଦ୍ୟଗଣୀ ବଂଶୀ ନେଇ ଆସି ବର୍ଗି ସ୍ୱରେ ବସିଲେଣି, ସେଠାକୁ ହରିଦାସ ଗୋବନ୍ଦ ଦାସ ହେରଦା ଗଲେଣି । ସେମାନଙ୍କୁ ପ୍ରସାଦ ଦେଇ ଉତ୍ସାରେ କନ୍ଥ ବଳଲେ ବାବାଙ୍କୁ ଆଣି ଦେବ । ସେମାନେ ମଠର ଆଶ୍ରିତ ଓ ସବୁ କାମରେ ହାଜର । ସେମାନଙ୍କ ପର ମନ ... ଗେଲ କେହି ୯ଟିଳ ନାହିଁ, ସେମାନଙ୍କୁ ଆଗେ ନ ଦେଇ ଫାଲରୁ ... କୁ କଏ ଦବ ? ମୁଁ ଦୟା କଲେ କଣ ହବ ମୋ କଥା ତ କେହି ଶୁଣିବେ ନାହିଁ । ମୁ କଛ ନ ଜାଣିଲା ପରି ଯେ କହୁଚି ।

( ରାମ ଦାସର ପ୍ରସ୍ଥାନ )

ବାବାଜୀ—ଆଶାଦାର ବାବା ! କଛ ଆଶା ଅଛ ନା ନବଣ ହୋଇ ଯିବା ।

ଦାର—ବସନ୍ତୁ ମହାରାଜ ! ମୁଁ ଆପଣଙ୍କ ପାଇଁ ଉଦ୍ୟମ କରୁଛ ।

( ଜାମୁନା ନଷ୍ଟମାଣୀର ପ୍ରବେଶ—ହୋଲି ହାତରେ )

ଜମୁନା—ରାଧେ ରାଧେ ! ସିଂହେ, ଅଧିକାରୀ କାହାନ୍ତି ?

ଦାର—ଅଧିକାରୀ ଠାକୁ ଘର ଆଡ଼େ ଅଛନ୍ତି ।

ଜାମୁନା—ଆଜ କଣ ହେଲା କ ମୋ ପ୍ରସାଦ ଏତେବେଳଯାଏ ପଠେଇ ଦେଲେ ନାହିଁ ? ଏ ବାବାଜଟା ଖାଇଲ କ ?

ଦାର—ନା ଗୋ ପ୍ରସାଦ ଅଛ । ବାବାଜୀଙ୍କୁ କଏ ପଗ୍ଭରୁଚ ?

ଜାମୁନା- ଛୁଆ କର ! ଏଇଟାକୁ କିଏ ପଗ୍ଭରବ ! ଶୁଖିଲା ମୁହାଁଟାଏ, ପ୍ରେମ ଭାବ କଛ ନାହିଁ ।

ଦାର ହଁ, ସେଠାଙ୍କ ନାହିଁ ପ୍ରେମ କାହୁଁ ଜାଣିବ ?

ଜାମୁନା—(ହସି ହସି) ଦୂର ! ତୋର ସବୁବେଳେ ଏଇ କଥା ନ ଯାଏ । ତୋ ମୁହଁରେ ଯେବେ ମୋ ନ ମଣ୍ଡ଼ିବ ।

ଦାର—କ ପୋକ, ପେଟିଲର ପ୍ରେମ ପୋକ ?

ଜାମୁନା—କଣ ପାପ କଥା ଗୁଡ଼ାକ କହୁ ! କୃଷ୍ଣ କୃଷ୍ଣ କୃଷ୍ଣ ।

ଦାର - "ଦାନ୍ତିରେ ଖାଏ, ଗୋଡ଼ରେ ପଡ଼ିଲେ ଗାଧୋଇ ଯାଏ ।"

ଜମୁନା -(ହସି ହସି) ଏବେ କେତେ ରଙ୍ଗରେ କଥା କହି ଆସିଲଣି ! ହଉ ହଉ, ... ଅନେଇ ... ଦେଇବୁ ଯେ ।

ଦାର - ମେଠି ମେ ପାଠ କାହିଁ, ଯା ଯା, ଅଧିକାରୀ ପାଖକୁ ଯା, ପ୍ରସାଦ ପାଇବୁ ।

(ଜାମୁନା ହରସ ବଦନେ ରାଧେ ରାଧେ ଉଚାରି ଠାକୁ ଘରକୁ ଗମନ)

ବାବାଜୀ—ଆଶାଦାର ବାବା ! ଆଉ କେତେ ବଳମ୍ବ ?

**ବୀର**—ଟିକଏ ରୁହ ମହାରାଜ ! ମୁଁ ଯାଇଁ ମହନ୍ତ ମହାରାଜଙ୍କୁ ଜଣାଏଁ ।

[ବୀର ସିଂହର ପ୍ରସ୍ଥାନ । ମହନ୍ତ ଙ୍କୋଳା ଲେନ ବୀର ସହିତ ପ୍ରବେଶ]

**ମହନ୍ତ**—(ବୀର ପ୍ରତି) ବାବାଜୀଟାଏ ! ତୁ କିପରି କହିଲୁ ଜଣେ ଉତ୍ତମ ବଷ୍ଟମାଣୀ ଖାଇବାକୁ ମାଗୁଛି ?

**ବୀର**—ନାହିଁ ମହାରାଜ ! ବଷ୍ଟମାଣୀ କହି ନାହିଁ । ମୁଁ ଜଣାଇଲି ଜଣେ ଉତ୍ତମ ବଷ୍ଟମ ଆସି ଖାଇବାକୁ ମାଗୁଛି ।

**ମହନ୍ତ**—ଆମକୁ ବଷ୍ଟମାଣୀ ପରି ଶୁଭିଲା । ବୀର, ତୁ ଆମକୁ ଭୁଲକୁ ଦହିଡ଼େଇଲୁ ? ଆଚ୍ଛା ଭଲ ହର୍ଷବିଷାଦ କରିଦେଲୁ । ଚାଲରେ ଚଣ୍ଡା ସାଜ୍ । ଗୁଲବ ପାଣିରେ ଗଞ୍ଜା ମଳିବୁ । ଅଗ୍ନି ମସଲ ଦେଇ ସ୍ୱାଙ୍ଗ ଘୋଟ୍ । ହରିଦାସକୁ କହି ଦେ, ଜଳଖିଆ ପାଇଁ ସର ଓ ମୋହନ ଭୋଗ ଚଞ୍ଚଳ କରିବ । ଘଣ୍ଟା ବେଳେ ଓଳିକି ବସାକୁ ଯିବା । ବାବାଜୀଙ୍କୁ ମନା କରି ଦେ, ଏତେ କୁଆଡ଼ୁ ଅସୁଚନ୍ତି ? ରଖିଦେବେ ନାହିଁ ।

**ବୀର**—ଆଜ୍ଞା ମହାରାଜ ! ସବୁ କରୁଛି, ଯାଳିଙ୍କୁ ଯିବା ହେଉନ୍ତୁ । (ମହନ୍ତଙ୍କ ପ୍ରସ୍ଥାନ । ରାମ ଦାସର ପ୍ରବେଶ ଗଞ୍ଜା ମଳି ମଳି)

**ବୀର**—ବାବାଜୀ ପାଇଁ ପ୍ରସାଦ ମୁଠିଏ ହେଲା ନା ?

**ରାମ**—ନା, ହୋଇ ପାରିଲା ନାହିଁ । ସେମାନଙ୍କୁ ତ ପ୍ରସାଦ ଅଣ୍ଟିଲା ନାହିଁ । ଏବେ କିଣ ଆଗ ଭୋଗ ରାଗ ଅଛି । ପୁଣି ବାଲ୍ୟଠାରୁ ଯେପରେ ବ୍ୟହିଲ ଊଣା ହୋଇଛି, ଠାକୁରଙ୍କ ପେଟ କାଟ, ଅଭ୍ୟାଗତକୁ କିଏ ପଚାରେ ? ଗଞ୍ଜା ଯେତେ ବୁହିଁ ମୁଁ ଦେଇପାରେଁ, ସେତ ତଦ୍ ଯୋଗ୍ୟ ନୁହେଁ । ଆମକୁ ଗଞ୍ଜା ଅଫିମ ମିଳିଲେ, ଅନ୍ନ ହେଲେ କେତେ ନ ହେଲେ କେତେ ? ତୁ ସେ ସବୁର ମାହାତ୍ମ୍ୟ କିଣ ବୁଝିବୁ ? (ରାମ ଦାସର ପ୍ରସ୍ଥାନ)

**ବୀର**—(ବାବାଜୀ ପ୍ରତି) ମହାରାଜ ! ପ୍ରମାଦ ନାହିଁ, ମୁଁ ବଡ଼ ଭୁଲ ହୁଡ଼ିଲି, ଅକାରଣେ ଆପଣଙ୍କୁ ଅଟକାଇଲି । ମୋ ଦୋଷ କ୍ଷମା କରିବା ହେବ । ମୋଠି ପଇସା ଟିଏ ଅଛି ଅଙ୍ଗୀକାର କଲେ ଦଅନ୍ତି ।

**ବାବାଜୀ**—ନାହିଁ ବାବା, ତୋର କି ଦୋଷ ? ତୁ ଅଭ୍ୟାଗତ ପାଇଁ ଅନେକ ଯତ୍ନ କଲୁ । ଏଥି ମଧ୍ୟରେ ତୁହି ଜଣେ ମନୁଷ୍ୟ, ଆଉ ସମସ୍ତେ ଅମନୁଷ୍ୟ । ଅହୋ ! କି ଦୁରବସ୍ଥା ! ମଠରେ ଏପରି ବ୍ୟବହାର ! ତୋ ପଇସା ଥାଉ, ତୋ ପ୍ରତି ଆମେ ଅତି ସନ୍ତୁଷ୍ଟ । ଏ ସ୍ଥାନ ତୋର ଯୋଗ୍ୟ ନୁହେଁ ।

**ବୀର**—କିଣ କରିବ ମହାରାଜ ! ପେଟ ପାଇଁ ଏଠାରେ ପଡ଼ିଛି । ଆମ କଥା ଯେ କହିଲି, ଆମେ ଦୁଃଖୀ ଗୃହଲୋକ, ପିଲା ବାଳକଙ୍କ ଚିନ୍ତାରେ ଦିନ ଯାଏ । ସେମାନଙ୍କର ତ ସେ ଚିନ୍ତା ନାହିଁ । "ଯୋଲରେ ଖାଇ ମେଲରେ

ଗଡ଼ଗଡ଼ାହୁଅନ୍ତି, ମନ ଉଗ୍ର ମନ୍ଥନ କରନ୍ତି" । ଏଥିପାଇଁ ତ ସେମାନଙ୍କର କାନ୍ଦଣା ହବାର ଭାବ ଭକ୍ତି କଣ୍ଠ ନାହିଁ, ପୁଣି ଗୋଟିଏ ଆଚମ୍ବିତ କଥା ଏଇ ଯେ କେହି କେହି ଖୋଲଧାରୀ କହନ୍ତି ଗୌରାଙ୍ଗ ମତରେ "ସ୍ୱକୀୟା ପରକୀୟା"ର କଥା ଅଛି । ପରକୀୟା ନ ହେଲେ ପ୍ରେମ ହୃଦ୍ଗତ ନାହିଁ ମହାରାଜ ! ଏହା କଣ ସତ ?

ବାବାଜୀ—ନା ବାବା, ଏହା କପଟ ଦେ ଲୋକେ ? ମହାତ୍ମା ଚୈତନ୍ୟଙ୍କର ଅନ୍ୟ ନାମ ଗୌରାଙ୍ଗ, ସେ ପ୍ରେମ ଧର୍ମ ପ୍ରଚାର କରିଥିଲେ । ତାଙ୍କ ତୁଲ୍ୟ ଈଶ୍ୱର ପ୍ରେମୀ ଅନ୍ୟ କେହି ସଂସାର ତ୍ୟାଗ କଲେ କିନ୍ତୁ ତାଙ୍କର ତ ପରକୀୟା ନ ଥିଲା, ବରଂ ସେ ସ୍ତ୍ରୀ ସମ୍ପର୍କ ତ୍ୟାଗ କରି ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିଲେ । ପରକୀୟା ବିନା ତାଙ୍କର କପଟ ପ୍ରେମ ଉତ୍ପନ୍ନ ହେଲା ? ପରକୀୟା ମତଟି କେତେକ ଲମ୍ପଟ ଗୋସ୍ୱାମୀଙ୍କର ସ୍ୱକପୋଳକଳ୍ପିତ ମତ ଅଟେ । ତାହା ଶାସ୍ତ୍ରୋକ୍ତ କିମ୍ବା ଚୈତନ୍ୟଙ୍କର ମତ ନୁହେଁ । ପରକୀୟା ମହାପାପ ଓ ପାପରୁ ପବିତ୍ର ପ୍ରେମ ଉତ୍ପନ୍ନ ନ ପାରେ । ତୁ ଏଥିରେ ମନ ଦେବୁ ନାହିଁ ବାବା । ଆଉ ଖୋଲ ଯେ ଦେଖୁଛୁ, ଏଥିରୁ ନାମ ଜପ ଭଜନ ପୂର୍ବକ ଗୋପନରେ କରିବାର ଶାସ୍ତ୍ରରେ ଲେଖେ, କହାରେ କହନ୍ତି "ଏ ହାତ ପୂଣ୍ୟ ଯେପରି ସେ ହାତ ନ ଜାଣେ" । ଖୋଲା ଯେଉଁ ସକଳ ସମୟରେ, ସକଳ ସ୍ଥାନରେ ଝୁଲିବା ଏଥିର ତାତ୍ପର୍ଯ୍ୟ ଅଟେ, ତାହା କେବଳ ଲୋକ ଦେଖାଣି । ସେଥିରୁ କ ଫଳ "ମନରେ ନାହିଁ ତ ମାଳରେ ନାହିଁ । ମାଳ ଭଜ ଭଜ ପାଇବୁ ନାହିଁ ?" ମନରେ ମୂଳ । "ରାମ ନାମ୍ ହଇ କୋହି କହେ ଠଗ୍ ଠାକୁର ଆଉର ଚୋର ! ବିନା ପ୍ରେମ୍ ସେ ରଟେ ନହିଁ ତୁଲସି ନନ୍ଦକିଶୋର ।" ଆଉରି ଏକ ଦୋହାରେ କହୁଛନ୍ତି – "ମନକା ଫେରତ ଜନମ୍ ଗୟୋ ନ ଗୟୋ ମନକା ଫେର୍ । କରକା ମନକା ଛୋଡ଼୍ କର୍ ମନକା ମନ୍କା ଫେର୍ ।" ଏହାର ଅର୍ଥ ବୁଝି ପାରିଲୁ ନାହିଁ ପରା ! ମାଳ ଫେରାଉ ଫେରାଉ ଜନ୍ମ ଗଲା କିନ୍ତୁ ମନର ଫେର ନ ଗଲା, ଅତଏବ୍ ହାତର ମାଳ ଛାଡ଼ି ମନର ମାଳ ଜପ ।

ଗୀର— ଠିକ୍ କଥା ମହାରାଜ ! ଏ ବିଷୟରେ ମୋର ବଡ଼ ସଂଶୟ ଥିଲା, ଆଜ ଆପଣଙ୍କ ଯୋଗେ ତାହା ଦୂର ହେଲା । ଆଜ ବଡ଼ ଜ୍ଞାନ ପାଇଲି, ଧନ୍ୟ ଆପଣଙ୍କୁ ! କେବଳ ମାଧ୍ୟ ଆପଣଙ୍କୁ ଦେଖିଲି, ବର୍ତ୍ତମାନ ଆଜ୍ଞା ଦିଅନ୍ତୁ ହେଉଛନ୍ତି ମୁଁ କାମକୁ ଯାଉଛି (ଭୂମିଷ୍ଠ ପ୍ରଣାମ) ।

ବାବାଜୀ—ମଙ୍ଗଳ ହଉ ବାବା, ତୋର ଏହିପରି ସୁମତି ଥାଉ । [ପ୍ରସ୍ଥାନ]

## ଚତୁର୍ଥ ଅଙ୍କ

ରଙ୍ଗଭୂମି—ନଦୀ କୂଳସ୍ଥ ତୋଟା

(ଜଣେ ମତଗ୍ଧ ସ୍ୱେରର ପ୍ରବେଶ)

ସ୍ୱେର (ସ୍ୱଗତ) ବାଃ କ ସୁନ୍ଦର ମୃଗଚର୍ମଟିଏ ପଡ଼ିଛି । କେହୁ ବାବାଜୀର ହବ ପଗ୍ର । ଯାହାର ହଉ "ଅକର୍ମେରକୁ ଦାତା ରାମ" ମୋର ସ୍ୱେର ଧନର ମୂଦଙ୍ଗ ଚଳିପିବ ।

(ସ୍ୱେର ମୃଗ ଚ୍ଛାଲ ନେଇଚିବା ସମୟରେ ବାବାଜୀଙ୍କର ପ୍ରବେଶ । ସ୍ୱେର ତାଙ୍କୁ ଦେଖି ଚ୍ଛାଲ ଫିଙ୍ଗି ପଳାଯିବେ)

ବାବାଜୀ—ଆରେ ବାବା ! ନେଉଥିଲୁ ତ, ଫୋପାଡ଼ି ଦେଇ ଯାଉଚୁ କାହିଁକି ? ତୋର ସେଥିରେ ଲୋଭ ଜନ୍ମିଚି, ଯା ନେଇ ଯା, କିଛି ଭୟ ନାହିଁ । ଆମେ ତ ତାହା ଆଉ ନବା ନାହିଁ, ତୁ ନେଇ ଯା । (ସ୍ୱେର ଆନନ୍ଦିତ ହୋଇ ଚ୍ଛାଲ ଘେନି ପଳାଇଲା ଓ ବାବାଜୀ ତଳେ ବସି ଧ୍ୟାନ ଭଜନ କଲେ । ସନ୍ଧ୍ୟା ସମୟରେ କେମୀ ଓ ଶ୍ୟାମୀ ପ୍ରବେଶ ହୋଇ ଫଳ ପୁଷ୍ପ ପୂର୍ଣ୍ଣ ଡାଲିଟିଏ ବାବାଜୀଙ୍କୁ ଭେଟି ଓଲଗି ହେଲେ)

ବାବାଜୀ—ମଙ୍ଗଳ ହଉ ମାତା, ତୁମେମାନେ କୁଆଡ଼େ ଆସିଲ ?

କେମୀ—ଆପଣଙ୍କ ଚରଣ ସେବାକୁ ଆସିଲୁ ।

ବାବାଜୀ—ତୁମେମାନେ କିଏ ?

କେମୀ—ଆମେ ମଙ୍ଗତ ଜନ, ସଙ୍ଗୀତ ବ୍ୟବସାୟ କରୁଁ ।

ବାବାଜୀ– ତୁମେ ସଙ୍ଗୀତ ଜାଣ, ଆଗ୍ରୁ ଗୋଟିଏ ଭଜନ ଗାଇଲ ।

କେମୀ ଓ ଶ୍ୟାମୀ ହଉ ମହାରାଜ ।

ଭଜନ—ରାଗିଣୀ ସିନ୍ଧୁ ତାଳ ଆଡ଼ ତାଳ (ଧମାର)

ବଣ୍ଟପଦ । କ ଦେବ ତୋଷିବ ତୁମ୍ଭ ମନ ହେ ।
ଯେଣିକ କରଇ ମୁହିଁ ନିରୀକ୍ଷଣ,
ତେଣେ ଦେଖେଁ କିଛି ନାହିଁ ମୋର ଧନ ।
ଅନ୍ନଜଳ ଫଳ ଫୁଲ କନ୍ଦ ଜନ-ଅଟଇ ତୁମ୍ଭର କୀର୍ତ୍ତି ହେ ।

ବାନ୍ଧିଚ ତୁମ୍ଭର ଧନରୁ ଯେ ମନ,
କରିବ ତୁମ୍ଭର ପାଦେ ସମର୍ପଣ,
ପ ପେ ଅପବିତ୍ର ହୋଇଚ ହୋଇଣ-କବାଟ କରୁଛୁ ସ୍ତୁତି ହେ ।
କରୁଣା ସାଗର ନାମ ଯେ ତୁମ୍ଭର,
ଏ ପାମର ପ୍ରତି ଦାରେ କୃପାକର,
ପବିତ୍ର କରିଣ ଦେବ ଦାନ ମୋର-ହେଉ ଏ ପାପୀର ଗତି ହେ ।

ବାଦଶା- ଅଚ୍ଛା ଗାଇଲ, ଆମେ ସନ୍ତୁଷ୍ଟ ହେଲୁଁ । ତୁମେମାନେ କାହିଁକି ଆସିଚ କହନ ?

କେମୀ—ମହାରାଜ ! ଇଏ (ଗ୍ରଧାଁ) ବେରାମ ଅଛି ସେଥିପାଇଁ ଆସିଚୁଁ ।

ବାଦଶା—ଆମେ ତ ବଇଦ ନେ ହୁଁ, ବଇଦଠାକୁ ଯାଇଁ ଉତ୍ତମ ଚିକିତ୍ସା କର, ଅବଶ୍ୟ ଆରୋଗ୍ୟ ଲଭିବ ।

କେମୀ ନାହିଁ, ଚିକିତ୍ସାରେ କଣ ହବ, ସେପରି ଭଲ ବଇଦ କାହାନ୍ତି ଓ ତହିଁକି ଆମର କହିଡ଼ି ବଳ କାହିଁ ? ଆପଣଙ୍କର ଆଜ୍ଞା ହେଲେ ତ ରୋଗ ଏହିକ୍ଷଣି ଛାଡ଼ି ପଳେଇବ ।

ବାଦଶା—ଟିଦ ଭଲ ବଇଦ ନାହାନ୍ତି ତେବେ ଡାକ୍ତରଠାକୁ ଯାଅ । ଡାକ୍ତର ଅତି ଉତ୍ତମ ଚିକିତ୍ସା କରନ୍ତି । ଅମ ଆଜ୍ଞାରେ ରୋଗ କପରି ଛାଡ଼ି ପଳେଇବ ? ଏହାତ ଅତି ଅସମ୍ଭବ ।

କେମୀ- କିଛି ଅସମ୍ଭବ ନୁହେଁ, ଆପଣଙ୍କର ମହିମାରେ ସବୁ ହୋଇପାରେ ।

ବାଦଶା—ଆମର ମହିମା ! ଆମେ ତ ମନୁଷ୍ୟ ମାତ୍ର ! ଆମର କି ମହିମା ! ମହିମା କେବଳ ପରମେଶ୍ୱରଙ୍କର । ଦେଖ ତାଙ୍କର ମହିମାରେ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର ଓ ଅସଂଖ୍ୟ ଜୀବ ସୃଷ୍ଟ ହୋଇଚନ୍ତି । ମନୁଷ୍ୟ ତ ଗୋଟିଏ ଘାସ ଗଛ ସର୍ଜନା କରି ନ ପାରେ ।

କେମୀ—ଆପଣତ ଆମ ପରି ମନୁଷ୍ୟ ନୁହନ୍ତି, ଆପଣ ପୀର ପୁରୁଷ,- ସାଧୁ । ଆପଣଙ୍କ ପରି ସାଧୁଙ୍କର କରଣୀ କାହିଁ ।

ବାଦଶା—ଆମେ କି ପୀର ପୁରୁଷ, ଆମେ କି ସାଧୁ ! କେହି ପୀର ପୁରୁଷ ହେଲେ ମଧ୍ୟ ତାହାର ଅଲୌକିକ ମହିମା କିପରି ହବ ?

କେମୀ ନା ମହାରାଜ ! ହବ; ଅଛି ଯାହା କଥା ସେପରି । ଆପଣଙ୍କ କଥା ଯାହା ଶୁଣିଚୁ, ତାହା ଅତି ଚମତ୍କାର !

ବାବାଜୀ—କଣ ଶୁଣିଚ କହନ ।

ଜେମା—ମହାରାଜ ! ଆପଣ ଆଜ ସୁଚଳବ ବୃକ୍ଷ ଦେଖିବାକୁ ଯାଇଥଲେ, ବାବୁ ଆପଣଙ୍କର ବଡ଼ ସମ୍ମାନ କଲେ । ତାଙ୍କ ପୁଅଟି ଦୁଷ୍ଟ ଓ ଗୁଣୀ ଅଟେ । ସେ ଆପଣଙ୍କୁ ଛଳିବା ପାଇଁ ଗୋଟିଏ ହାଣ୍ଡିରେ ରନ୍ଧା ମାଉଁସ ପୂରେଇ ପଲମ ଘୋଡ଼େଇ ଆପଣଙ୍କୁ ଆଣି ଦେଲା ଓ କହିଲା ଏଥିରେ ପ୍ରସାଦ ଅଛି ସେବା କରନ୍ତୁ । ଆପଣ ତ ସର୍ବଜ୍ଞ ତାହା ଜାଣିପାରି କହିଲେ ଏଥିରେ ଯାହା ଅଛି ତାହା ଏମ ଖାଇବାର ନୁହେଁ ତାହା ତୋତେ ଖାଇବ । ଏହା କହି ପଲମ କାଢ଼ି ଦିଅନ୍ତେ ସେଥିରୁ କେଡ଼େ ବଡ଼ କୁକୁଡ଼ାଟାଏ ବାହାରି ପୁଅଟାକୁ ଏପରି ଖୁମ୍ପିଲା ଯେ, ସେ ଛଟପଟ ହୋଇ, ରଡ଼ି ଛାଡ଼ିଲା । ତାହାର ମନ୍ତ୍ର ଯନ୍ତ୍ର କିଛି କାଟିଲା ନାହିଁ । ସେ ଯହୁଁ ଦୋଷ ମାନି ଆପଣା କାନରେ ଚଟକଣା ଖାଇଲା ତହୁଁ ଆପଣ ତାକୁ କଲ୍ୟାଣ କଲେ, ସେ ସୁସ୍ଥ ହେଲା । କୁକୁଡ଼ା କୁଆଡ଼େ ଉଡ଼ିଗଲା ।

ବାବାଜୀ—(ଉଚ୍ଚସ୍ୱରରେ) ମିଛ ମିଛ, କିଏ ଏହା କହିଲା ?

ଜେମୀ—ନା ମହାରାଜ ! ମିଛ କିପରି, ଆମେ କେତେ ଲୋକଠାରୁ ଶୁଣିଲୁ, ଏ କଥା ରାଜ୍ୟଯାକ ରଟିଗଲାଣି । ଆପଣ ଲୁଚେଇଲେ କି ଲୁଚିବ ? ଆମେ ଶୁଣି ଦଉଡ଼ି ଅଇଲୁ । ଜଣେ ବଙ୍ଗାଳୀ ବାବୁ ମଧ୍ୟ ଆସିବେ । ତାଙ୍କର ବାପ ବାତ ରୋଗରେ ଛଅ ମାସ ହେଲା ବିଛଣାରୁ ଉଠି ନାହାନ୍ତି । ଆମେ ପାପୀ ବୋଲି ଘୃଣା କରୁଛନ୍ତି କି ? ଆମେ ଅତି ଦୁଃଖୀ; ନିରାଶ୍ରିତ, ଆମର କୌଣସି କୂଳ ନାହିଁ ( ପାଦ ତଳେ ପଡ଼ି ) ଦୋହି ମହାରାଜ ! ଆମ ଉପରେ ଦୟା କରନ୍ତୁ, କପଟ କରନ୍ତୁ ନା, ଆମେ କିଛି ଭେଟ ଖର୍ଚ୍ଚ ଦେବୁଁ ଯେ ।

ବାବାଜୀ—ଉଠ ଉଠ, ଆମେ କପଟ କରୁନାହୁଁ, ସତ କହୁଚୁ ଶୁଣ ।

ଆମେ ଅସମୟରେ ଭୋଜନ ମାଗିବାରୁ ସେ ଦୁଷ୍ଟ ପୁଅଟା ବିରକ୍ତ ହୋଇ ଗୋଟିଏ ହାଣ୍ଡିରେ ଜୀଅନ୍ତା କୁକୁଡ଼ାଟିଏ ପୂରେଇ ପଲମ ଘୋଡ଼େଇ ଆମ୍ଭଙ୍କୁ ଆଣି ଦେଲା ଓ କହିଲା ଏଥିରେ ପ୍ରସାଦ ଅଛନ୍ତି, ସେବା କରନ୍ତୁ । ଆମେ ପଲମ କାଢ଼ି କୁକୁଡ଼ାକୁ ଦେଖି ଚମକି ଉଠିଲୁଁ । ତହୁଁ ସେ ଟାହୁଲି କରି କହିଲା,—ଆପଣଙ୍କ ମହିମାରେ ମରା ରନ୍ଧା କୁକୁଡ଼ା ବଞ୍ଚିଉଠିଲା । ତେତେବେଳେ କେହି ଭଲ ଲୋକ ପହଞ୍ଚି ପୁଅଟାକୁ ଭର୍ତ୍ସନା କଲେ ଓ ଆମେ ତାକୁ କେତେକ ଉପଦେଶ ଦେଇ ଚାଲିଆସିଲୁ । ଏତିକି ସତ୍ୟ ଆଉ ସବୁ ମିଥ୍ୟା ।

ସୁଧୀ—( କେମୀ ପ୍ରତି ) ନେ ! ନଅାଲଗା ଗୁଡ଼ାକ କେମନ୍ତେ ଏତେ ମିଛ କଥା କହୁଲେ ମ !

କେମୀ—ହଉ, ଏକଥା ନିନା ମିଛ ଖେଳ । ଆଉ ସତ କଥା କେତେ ଅଛୁ । ସିଦ୍ଧ ପୁରୁଷଙ୍କର ମହିମା ହୁଏ ।

ବାବାଜୀ—ଯେଉଁମାନଙ୍କର ଚିତ୍ତ ସର୍ବଦା ଈଶ୍ୱରଙ୍କଠାରେ, ଈଶ୍ୱର ଛଡ଼ା ଯାହାଙ୍କର କିଛି କାର୍ଯ୍ୟ ନାହିଁ ବା ଚିନ୍ତା ନାହିଁ, ସେମାନଙ୍କୁ ସିଦ୍ଧ ପୁରୁଷ ବୋଲି * ସେମାନେ ଈଶ୍ୱର ଲଭ ପାଇଁ ଯୋଗ ସାଧନା କରନ୍ତି । ଆପଣାର ମହିମା ପାଇଁ କରନ୍ତି ନାହିଁ କିମ୍ବା ମହିମା ଜଣାନ୍ତି ନାହିଁ । ସେମାନେ ବିନୟୀ ଓ ନମ୍ର ହୁଅନ୍ତି । ଯେଉଁ ଅବସ୍ଥାରେ ଥାନ୍ତି ତହିଁରେ ସେମାନେ ଅତି ସନ୍ତୁଷ୍ଟ ଓ ସର୍ବଦା ଆନନ୍ଦିତ ।

କେମୀ—ଯେଉଁ ବାବାଜୀମାନେ କରଣୀ କରନ୍ତି, ସେମାନେ କି ସିଦ୍ଧ ପୁରୁଷ ନୁହନ୍ତି ?

ବାବାଜୀ—ସେମାନେ ଅର୍ଥ ଲୋଭୀ । କଉଡ଼ି ଉପାର୍ଜ୍ଜନ ପାଇଁ ସେମାନେ କରଣୀର ଚେଷ୍ଟା କରନ୍ତି । ଦଣ୍ଡବତ କିମ୍ବା ଭେଟ ବିନା ସେମାନଙ୍କଠାରୁ ଆଜ୍ଞା ବାହାରେ ନା । ସେମାନେ କଳକୌଶଳେ ଓ ନାନାବିଧ ଉପାୟରେ କିଛି ଆଚମ୍ବିତ କଥା ଦେଖାଇ ଦିଅନ୍ତି । ଅବୋଧ ଲୋକେ ତାହା ତାଙ୍କର ମହିମା ବୋଲି ମଣନ୍ତି । ଆମର କରଣୀ କଥା ଯେପରି ରଚିତ, ତାହା କେହି ଶଠ ସାଧୁ କପାଳକୁ ଘଟିଥିଲେ ସେ ଅନେକ କଉଡ଼ି ଉପାର୍ଜ୍ଜନ କରି ନଥାନ୍ତା । ଏହିପରି ସବୁ ଜାଣିବ । ସାଧୁ ଅସାଧୁ, କୌଣସି ଲୋକର ଅଲୌକିକ ମହିମା ହୋଇ ନପାରେ, କାରଣ ତାହା ଈଶ୍ୱରଙ୍କ ନିୟମ ବିରୁଦ୍ଧ ।

କେମୀ—ତେବେ କିପରି ସାଧୁ ଆଜ୍ଞାରେ ରୋଗୀର ରୋଗ ଭଲ ହୁଏ, ଅପୁତ୍ରୀ ପୁତ୍ର ଲଭ କରେ, ମାମଲା ମକଦ୍ଦମା ଡ଼ିଗ୍ରୀ ହୁଏ ? ଏହା ବୁଝାଇ ଦେଲେ ମୋ ମନ ମାନିବ ।

ବାବାଜୀ—ସ୍ଥାନ, ବାୟୁ ପରିବର୍ତ୍ତନ, ମନର ଦୃଢ଼ତା ଇତ୍ୟାଦି ଅନେକ କାରଣରେ ରୋଗ କ୍ଷମା ହୁଏ ଓ ମଧ୍ୟ କୌଣସି କୌଣସି ସ୍ଥଳେ ରୋଗ ଆପଣା ସୁଖେ ଭଲ ହୋଇଯାଏ । କେତେକ ସ୍ଥଳେ ଔଷଧ ପଥ୍ୟାଦି ଗୁଣ କରେ ଓ କେହି କେହି ବାବାଜୀ ଆଜ୍ଞା ସହିତ ଗୁପ୍ତ ଔଷଧ ମଧ୍ୟ ଦିଅନ୍ତି । ବାସ୍ତବରେ ଏହି ହେତୁମାନଙ୍କରେ କେହି କେହି ରୋଗୀ ଭଲ ହେଲେ ଆଜ୍ଞାର ନାମ ହୁଏ

* ଈଶ୍ୱରଙ୍କଠାରେ ଚିତ୍ତର ସେ ଜାଣିଙ୍କୁ ଯୋଗ କହି ଓ ଯାହାଙ୍କର ଏ ଯୋଗ ସିଦ୍ଧ ହୁଏ ତାଙ୍କୁ ସିଦ୍ଧ ପୁରୁଷ ବୋଲି ।

କିନ୍ତୁ ଅନେକ ସ୍ଥଳେ ଅଜ୍ଞା ସଫଳ ହୁଏ ନାହିଁ । ରୋଗୀମାନେ ଆଜ୍ଞା ଉପରେ ନିର୍ଭର କରି ଚିକିତ୍ସା କରନ୍ତି ନାହିଁ; ଏଣୁ କରି ରୋଗ ବୃଦ୍ଧି ହୋଇ ସେମାନଙ୍କୁ ଅଶେଷ କଷ୍ଟ ହୁଏ ଓ କେହି କେହି ମୃତ୍ୟୁ ପ୍ରାପ୍ତ ହୁଅନ୍ତି । ଏ ସ୍ଥଳେ ବାବାଜୀମାନେ କୁହନ୍ତି ଆମଠାରେ ରୋଗୀର ଦୃଢ଼ ବିଶ୍ୱାସ ନ ହେବାରୁ ଆଜ୍ଞା ସଫଳ ହେଲା ନାହିଁ । ଯଦି ବିଶ୍ୱାସ ମୂଳ ହେଲା ତେବେ ଆଜ୍ଞାର ମହିମା କେଉଁଠି ରହିଲା ? କେତେକ କାରଣରୁ ସନ୍ତାନ ଉତ୍ପତ୍ତି କିଛି କାଳ ସ୍ଥଗିତ ହୋଇଯାଏ ଓ ସେ କାରଣମାନ ଦୂରୀଭୂତ ହେଲେ ସନ୍ତାନ ଜନ୍ମେ ଏଥିକୁ 'ତାଳ ପଡ଼ିବା ସମୟେ କାଉ ବସିଲା' ପ୍ରାୟ ହୋଇ ଏକ ସ୍ଥଳେ ବାବାଜୀର ଆଜ୍ଞା ଘଟିଯାଏ । ମକଦ୍ଦମା ଅବସ୍ଥା ଦୃଷ୍ଟିରେ ସେମାନେ ଜୟ ଅଥବା ଅଜୟର ଆଜ୍ଞା ଦିଅନ୍ତି;—ଗୋଟା ବା ଘଟେ ଗୋଟା ବା ନଘଟେ । ଦୈବୀ ବାବାଜୀର ଦୁଇ ଚାରି କଥା ଘଟିଲେ ଲୋକେ ତାହାଠାରୁ ଦଉଡ଼ନ୍ତି ଓ ସେ ଆଜ୍ଞା ପଣେ ଉପାର୍ଜନ କରେ । ପଛକୁ ତାହାର ଅନେକ କଥା ନ ଘଟିଲେ ଆଉ ତାହାର ଚାତୁର୍ଯ୍ୟ ମାନ୍ୟ ହୁଏ ନା । ଏଠାରେ ଜଣେ ଧୋବା ୧୦ ଦିନ କରଣୀ ବାବାଜୀର କରି କେତେ ଉପାର୍ଜନ କଲା, କେତେ ଲୋକର ଜାତି ମାରିଲା ଏହା ତ ତୁମ୍ଭେ ଜାଣିଥିବ । ଏହିପରି ସବୁ ବାବାଜୀର ମହିମା । ଆଚ୍ଛା, ଏତେକ ବିଷୟରେ ମହିମା ହୁଏ ଆଉ ଔଷଧରେ ହୁଏ ନାହିଁ କାହିଁକି ? କାଠ ଖଣ୍ଡିକୁ କେବଳ ଆଜ୍ଞାରେ କେହି ସୁନା କରିଦେଇ ପାରେ ?

କେମୀ ନା, ପାରେନା । ବୁଝିଲି ମହାରାଜ ! ଆମେ ଅବୋଧ ଲୋକଙ୍କୁ ଠକି ସାଧୁମାନେ ବଡ଼ ଠକୁଚନ୍ତି ।

ବାବାଜୀ-- ଧର୍ମକୁ ମଙ୍ଗଳ, ପାପକୁ ପରମାଦ । ଧର୍ମରେ ରୁହ, ସବୁ ମଙ୍ଗଳ ହେବ ।

କେମା— ସତ ମହାରାଜ, ଠିକ୍ କଥା । ( ଚୋଟା ଅନ୍ୟ ପାର୍ଶ୍ୱରେ ଶିବ ସିଂହ ଓ କେମସ୍ ଦଳେଇଙ୍କର ପ୍ରବେଶ )

କେମସ- ରାଜ ! ବାବାଜୀଙ୍କର କରୋଲା ସାକ୍ଷାତ ସହଣେ ରାଜ ଭରି ଆସିଲୁଁ କିନ୍ତୁ କରୋଲା ତ ନୁହେଁ, ଦୁଇ ଟେକ ଜଣ ଅଛନ୍ତି ପରି ! ଭୂଟିଷି ଶୁଭୁଛି, ହେଉ ପଶୁ ନାହିଁକି ?

ଶିବ—(ଅନାଇଁ) ସତେ ତ ଦୁଇ ଜଣ ସ୍ତ୍ରୀ ଲୋକ, ବାଃ !

କେମସ୍—ହେ ଆମେ ବାବାଜୀ ହେଲେ ହୁଅନ୍ତା । ( ମନ୍ଦ ସ୍ୱରେ )

ଶିବ— ତୁଇ କଣ ନିଶା ହେଉଛି କି ? ହଁ ହଁ ହେଉଛି ତ । ଆଚ୍ଛା, ବାବାଙ୍କଠାରୁ ଅଲଗା ଯିବା କିପରି ? ଯଦି ସେମାନଙ୍କ ଲୋକେ ଆମ ଆସିବାର ପ୍ରକାଶ ହୁଏ ଓ ହାତୁ, ବନ୍ଦ ହେବାକୁ ଶୁଣନ୍ତି, ତେବେ ସେମାନେ ହସିବେ । କେତେ ଟାହୁଲ କରିବେ ।

ଜେମସ୍— ସେମାନଙ୍କ ହସ ଟାହୁଲକୁ କିଏ ପଚାରେ ? ଆମର ପାଦ୍ରି ସାହେବର କାନରେ ପଡ଼ିଲେ ତ ସେ ଭେରି ବକିବ । ହୁଏତ ମତେ ପୁଣି Excomunicate ( ସମାଜ ଚ୍ୟୁତ ) କରିବ ।

ଶିବ— ଅଚ୍ଛା ଚାଲ ନଦୀକୂଳକୁ ଯିବା, ସେମାନେ ଗଲେ ଆସିବା । ଅନ୍ଧାରରେ ତୋର ନିଶା ମଧ୍ୟ ଉଣା ହୋଇଯିବ । ଭଲ କିଏ ବର୍ତ୍ତିରେ ତୋତେ ଏତେ ନିଶା ହେଲା କିପରି ? ତୁ ତ କିଛି ଚୋହୁ । ଦେଖ, ମୁଁ ତୋର ଦ୍ୱିଗୁଣ ବରଣ୍ଡି ଖାଇଛି, ତହିଁ ପୂର୍ବରୁ ଦୁଇ ଗୋଟା ମଦନ୍ ଟାଣି ଥିଲି । ଜାହାର ସାଧ୍ୟ ମେ ମତେ ନିଶା ହୋଇଛି ବୋଲି ଠାହରେଇବ !

ଜେମସ୍— ଛି ଛି ! ତୁ ମଦନ୍ ଖାଉ ? କେଉଁ ଖାଉଛୁ ମ ?

ଶିବ— ଦୂର୍ । ତୁ ସେଥିର କଥା କଣ ଜାଣୁ । 'ଯେ ନା ଖାଏ ମଦନ୍ ଗୁଲି । ତାକେ କି ମାନୁଷ ବଲି ?' ଯେବେ ଥରେ ଖାଇ ମଜା ବୁଝନ୍ତୁ, ତେବେ 'ଛି ଛି' କହନ୍ତ କି କଣ କରନ୍ତୁ ଦେଖନ୍ତେଇ ।

ଜେମସ୍— ଆଃ ଥୂଃ । ମୁଁ କୁଆଡ଼େ ମଦନ୍ ଖାଇବ ! ମଦନରେ ଯେଉଁ ମଏଲା କାରବାର ତାହା ଥରେ ଦେଖି ଜାଣି ମାଡ଼ିଲି । ତୁ ଏଡେ ଇଂରେଜି ପଢ଼ି, ସଭ୍ୟ ହୋଇ ତୋର ଏପରି ମନ୍ଦ କାରବାର ? ଛି ଛି, ସଙ୍ଗ ରୁ ଯୋଗୁ ମଜା ପାଇ ଖାଉଛୁ କିଛି ଥରେ ସେଥିରୁ ଏବେ ବେଳେକେ ରହିତ ହବୁ । ପୁରୁଣା ମଦନଙ୍କର ଅବସ୍ଥା ଦେଖୁ ନାହଁ, କେତେ ମଲେଣି, କେତେ ମର୍କଟ ରୂପ ଧଇଲେଣି, କେତେ ଗ୍ରେର ହେଲେଣି । ଦେଖି ଶୁଣି ଅନ୍ଧ, ସବୁ ନିଶାଠୁ ତାହା ଅଧିକ ମନ୍ଦ । ଛାଇ, ତା ଛାଡ଼ିଦେ, ଚେଷ୍ଟାକଲେ ଛାଡ଼ିଯିବ ।

ଶିବ— ମଦଖୋରର ସବୁ ଦୋଷ, Drinkingର ( ସୁରାପାନର ) କିଛି ଦୋଷ ନାହିଁ । ଚାଲ ବନ୍ଧ ଉପରକୁ ଚାଲ, ତେଣେ ଜଣେ ଅନେଇଲାଣି ।

( ପ୍ରସ୍ଥାନ )

ରାଧୀ— ( ଜେମୀ ପ୍ରତି ) ଆଲୋ ନାନୀ ! କୋଉଠି ସେ ମୁଣ୍ଡରେ ଯୋଡ଼ାଏ ଧଳା ଧଳା ଭଣ ବୁଣିଗଲେ ! ( କାନର ସ୍ୱରେ ) ଭଲେ କଣ ଲୋ ?

ଜେମୀ— (ଅନାଇ) କାହିଁ କିଛି ତ ନାହିଁ ।

ସୁଧୀ—ଉଃ, ଟେଟେ ଭୂ—(ଅଚେତନ ହୋଇପଡ଼ିଲା) ।

ଜେମୀ—ମୋ ମାଆ ! ଇଏ କଣ ହେଲା ? ସୁଧୀ ଲୋ ଏମିତି କାହିଁକଲୋ; ସୁଧୀ ! କିଛି ଡର ନାହିଁ । (ସୁଧୀକୁ କୋଳରେ ଧରି ) ସୁଧି ସୁଧି ! (କାତର ସ୍ୱରେ) ମମ, ଶୁଣିବାକୁ ତ ନାହିଁ ଅନାଇଁବାକୁ ତ ନାହିଁ । କଣ ହେଲା ? ମୋ ସମ୍ପତ୍ତି ତ ସରିଲା (କ୍ରନ୍ଦନ) ମୁଁ ପୋଡ଼ାମୁହିଁ ସ୍ୱାକୁ କାହିଁକି ସଙ୍ଗରେ ଏଠିକି ଆଣିଲି ଲୋ ! ସୁଧାସୁଣୀ ତ ଭୂ-ଭଗ ଉଡ଼ିଗଲେ ଲୋ ! ମୋ ମାରୁଣୀଲୋ, କଣ କରିବି ? ମତେ ତ କିଛି ବୁଦ୍ଧି ଦିଶୁ ନାହିଁ ଲୋ, ମୋ ମା ରାଣୀ ଲୋ ।

ବାବାଜୀ—ଏତେ ଅସ୍ଥିର କାହିଁକି ? ଥଏ ହୋ ।

ଜେମୀ—(କାନ୍ଦି କାନ୍ଦି) କଣ ଥଏ ହେବି ମହାରାଜ ! ମତେ ତ ବ୍ରହ୍ମାଣ୍ଡ ଅନ୍ଧାର ଦିଶିଗଲାଣି, ମହାରାଜ ! ଏଟା ଡାଆଣୀ ଭୂତର ଜାଗା, ମୋ ସୁଧୀ ତ ଏଡ଼େ ସୁନ୍ଦରୀ ସୁକୁମାରୀ, ତାକୁ କାହାର ଦୃଷ୍ଟି ହେଲା, କି ଭୂତ ମାଡ଼ି ବସିଚି, କି କିଛି ଭେଟଣା ହେଲା—ମୁଁ ତ କିଛି ଠିକଣା କରି ପାରୁ ନାହିଁ । ତାକୁ ଘରକୁ ନେବି କେମିତି ମତେ ବୁଦ୍ଧି ଦିଶୁ ନାହିଁ । ମହାରାଜ ! ତୁମ ଗୋଡ଼ ତଳେ ପଡ଼ୁଚି ତୁମେ ମତେ ସାହା ହୁଅ ।

ବାବାଜୀ—ତୁ ଅଧୈର୍ଯ୍ୟ ହୋ ନା । ଭୂତ, ଡାଆଣୀ, ଭେଟଣା ସବୁ ମିଛ । ସେ କେବଳ ଭୟରେ ଅଚେତନ ହୋଇଚି । ଏହିକ୍ଷଣି ଚେତନା ପାଇବ, ତୁ ତା କାନ ଫୁଙ୍କିଲୁ ।

ବାବାଜୀ—ତୁ ଅଧୈର୍ଯ୍ୟ ହୋ ନା । ଭୂତ, ଡାଆଣୀ, ଭେଟଣା ସବୁ ମିଛ । ସେ କେବଳ ଭୟରେ ଅଚେତନ ହୋଇଚି । ଏହିକ୍ଷଣି ଚେତନା ପାଇବ, ତୁ ତା କାନ ଫୁଙ୍କିଲୁ ।

ଜେମୀ—(କାନ ଫୁଙ୍କି ଫୁଙ୍କି) କାହିଁ ମହାରାଜ ! କିଛି ତ ହେଲା ନାହିଁ । ତୁମେ କଣ କହୁଚ ଭୂତ ଫୁତ ମିଛ ! ତାହାର ଦାନ୍ତ ଡଙ୍କ ମାଡ଼ି ଦେଲାଣି, ମୁଁ କଣ କରିବି ? (କ୍ରନ୍ଦନ)

ବାବାଜୀ—ଆଚ୍ଛା, ତୁ ସ୍ଥିର ହୋଇ ତାକୁ ଟିକିଏ କୋଳରେ ବସେଇଲୁ, ଆମେ ଏହିକ୍ଷଣି ଭଲ କରିଦେବୁଁ ।

( ଜେମୀ ସୁଧୀକୁ କୋଳରେ ବସାଇଲାରୁ ବାବାଜୀ ତାହା ମୁହଁରେ ପାଣିମାରି କିଛିକ ପାଣି ପିଆଇ ଦେଲେ ଓ ଫୁଲ ଡାଳରେ ପବନ କଲେ, ମୁହୂର୍ତ୍ତେ ପରେ ସୁଧୀ ଚେତନା ପାଇଲା )

ବାବାଜୀ—ରାଧି ! ମନୁଷ୍ୟ ଦେଖି ଏପରି ଡରିଲୁ ? ଆମେ ଦେଖିଚୁ ଦୁଇଜଣ ମନୁଷ୍ୟ ତୋଟାର ସେ ମୁଣ୍ଡରେ ମୁହୂର୍ତ୍ତେ ଠିଆ ହୋଇ ଚାଲିଗଲେ । ତୋର ଏଡ଼େ ଭୟ ହେଲା କାହିଁକି ?

ରାଧୀ—ମହାରାଜ ! ଏ ଭୂତ ଡାଆଣୀର ଯାଗା, ମୁଁ ଭୂତ ମନରେ କରି ଚମକି ପଡ଼ିଲି ।

ବାବାଜୀ—(କେମ୍ପୀ ପ୍ରତି) ଦେଖ୍ ଆମେ କଣ କହୁଥିଲୁ ବାସ୍ତବରେ ଭୂତ ଡାଆଣୀ ଇତ୍ୟାଦି କିଛି ନାହିଁ । କୁସଂସ୍କାର ହେତୁ ସେପରି ଭ୍ରମ ମୂଳକ ବିଶ୍ୱାସ ଥିବାରୁ ଭୟ ହୁଏ, ସେହି ଭୟଟି ଭୂତ । "ନିଜ ଗାଁ ମଶାଣି, ଘରଗାଁ ନଈକୁ ଭୟ ହୁଏ ।" ପରଗାଁ ମଶାଣିରେ ଶୋଇ ରହିଲେ ମଧ୍ୟ ଭୂତ ଲାଗେ ନା । କାରଣ ତାହା ଜଣା ନଥିବାରୁ ଭୟ ହୁଏ ନା ।

କେମ୍ପୀ—ହଉ ରାଧୀର ମିଛା ଭୟରେ ଏପରି ହେଲା, ଆଉ ଯେ ଭୂତର କାଣ୍ଡ ମୁଁ ଦେଖିଚି ତାହା ତ ଭୟ ନୁହେଁ । ଏଠାରେ ହରି ସିଂହର ସ୍ତ୍ରୀଯାକୁ ଭୂତ କି ବାଉଳି ଲାଗିଲା ଯେ, ସେ ଆଠ ଦିନ ଯାଏ ଏତେ ଧୂମ ଧାମ କଲା ମୁଁ ତା କଣ କହିବି ! ବଳୀ ମାହାନ୍ତି ଘରକୁ ହଠାତ୍ ରାତି ଦିନ ଟେକାପଥର ହାଡ଼ ଫୋପାଡ଼ିଲା, ଏଠିକି ଚାଳ ସେଠି ରଖିଦେଲା ପୁଣି ତାହାର ଡେଙ୍ଗା ପୁଅକୁ ରାତିରେ ନିଦରୁ ଉଠେଇ ଦୁଇ ପା ବାଟ ନେଇଯାଇ ଗୋଟିଏ ମଣ୍ଡାଥରେ ମାଡ଼ି ଦେଲା । ସେହି ପଞ୍ଚାୟତ ମନ୍ତ୍ର ଯନ୍ତ୍ର କରି ସେମାନଙ୍କୁ ରକ୍ଷା କଲା । ଆଉ ସବା ମା ସିଣ ଚୁଣୀ କଣ କୁଳଲାଗିଲା ଯେ, ତାକୁ କେହି ଛଡ଼ାଇ ପାରିଲେ ନାହିଁ, ତାହାର ପ୍ରାଣ ନେଲା । ଯେବେ ଭୂତ ଡାଆଣୀ ମିଛ, ତେବେ ଏସବୁ ହେଲା କପରି ?

ବାବାଜୀ—ହରି ସିଂହର ସ୍ତ୍ରୀଯା ମନ୍ଦ କାମନାରେ ଛଟା କରିଥିବ । ବଳୀ ଘରକୁ କେହି ଦୁଷ୍ଟ ଲୋକ ଟେକା ଇତ୍ୟାଦି ଲୁଚିକରି ଫୋପାଡ଼ୁଥିବ । ବାତ ପିତ୍ତ ବା ସନ୍ନିପାତ ରୋଗରେ ରୋଗୀ ବକେ, ବିଛଣାରୁ ଉଠି ପଳାଏ, ମତି ଭ୍ରମ ଓ ଶରୀରର ନାନାଦି ବିଭଙ୍ଗ ହୁଏ । ଯେଉଁ ଜଣକ ମରିଗଲା, ତାକୁ ଏହି ପ୍ରକାର କିଛି ଉତ୍କଟ ରୋଗ ଘଟିଥିବ । ତାହା କେହି ଚିହ୍ନି ନ ପାରି ଭୂତଲଗା ବୁଝିଲେ, ଭୂତର ନାମ ପକାଇବାରେ ସେ ଗୋଟିଏ ପ୍ରଚଳିତ ନାମ କହୁଅଛି । ଆମେ ଦେଖିଚୁ ଜଣେ ପୋଖରୀକୁ ଦିନେ ସାମାନ୍ୟ ଜ୍ୱର ହୋଇ ହଠାତ୍ ସନ୍ନିପାତ ହେବାରୁ ସେ ବକିଲା ଓ ଚକ୍ଷୁ କିଛି ଲାଲ୍ ଦିଶିଲା ଲୋକେ ତାକୁ ଭୂତ ଲାଗିବାର ବୁଝି ମନ୍ତ୍ର ଦ୍ୱାରା ଭୂତ ଛଡ଼େଇବାରେ ରହିଲେ । ଶେଷକୁ ସନ୍ନିପାତ ବୋଲି ଚିହ୍ନିଲେ କିନ୍ତୁ ସେତେବେଳକୁ କିଛି

ଉପାୟ ନ ଥିଲା । ତାହାର ଫଳ ହେଲା । ଆଜି ଭୟରେ ମଧ୍ୟ ପ୍ରାଣ ବାହାରି ଯାଏ, ଲୋକେ ବୁଝି ନ ପାରି ଦେବା ଦେବୀର ଚେଷ୍ଟା କହନ୍ତି । ଭୟ ହିଁ ଭୂତ, ଭୟ ହିଁ ଭେଟଣା, ଭୟ ନ ହେଲେ କିଛି ନାହିଁ । କୁସଂସ୍କାର, ଅଜ୍ଞାନତା ଓ ଅଧର୍ମ ଭୟର ମୂଳ ଅଟେ ।

**ନେମୀ**—ଆଜ୍ଞା ଚିରକୁଣୀ ନିଆଁ ଜାଳେ କିପରି ? ଏଥିରେ ତ ଭୟ ଭ୍ରାନ୍ତି ନାହିଁ ।

**ବାବାଜୀ**—ହଁ ଭ୍ରାନ୍ତି ଅଛି । ତାହା ଚିରକୁଣୀ ନୁହେଁ, ତାହାର ତତ୍ତ୍ୱ ଶୁଣ । ପଚିଆ ସ୍ଥାନରୁ ଅଥବା ପଚା ଦ୍ରବ୍ୟରୁ କିମ୍ବା ପୋଡ଼ା ହାଡ଼ରୁ ଏକ ପ୍ରକାର ବାଷ୍ପ ବାହାରେ ଯେ ତାହା ଆପଣା ଛୁଇଁ ଜଳି ଉଠେ, ପବନ ଯୋଗେ ଗମନ କରେ ଓ କେତେବେଳେ ଲିଭିଯାଏ ଓ ପୁଣି ଜଳି ଉଠେ । ଏହାକୁ 'ଗାସ୍' ଅର୍ଥାତ୍ ବାଷ୍ପ ଆଲୁଅ କହନ୍ତି । ଶ୍ମଶାନରେ ଅନେକ ଶବ ପଡ଼ି ଶଡ଼ୁଥିବାରୁ ଓ ପୋଡ଼ା ହାଡ଼ ଥିବାରୁ ସେଠାରେ ଓ ପାଟ ବିଲରେ ଏ ବାଷ୍ପ ଆଲୁଅ ଅଧିକ ଦେଖାଯାଏ । ଏକ ପ୍ରକାର ବିଲୁଆ ଅଛନ୍ତି ସେମାନଙ୍କ ମୁହଁରୁ ମଧ୍ୟ ଶୂନ୍ୟ ଆଲୁଅ ବାହାରେ । ଏହାଙ୍କୁ ଉଲ୍କା-ମୁଖୀ କହନ୍ତି । କଲିକତା ସହର ମଧ୍ୟରେ କଳଯୋଗେ ଏପରି ଗାସ୍ ଆଲୁଅର ରୋଷଣୀ ପ୍ରସ୍ତୁତ ହୁଅଇ । ଚିରକୁଣୀ ନିଆଁ ଜାଳି ପିଲା ଖେଳିବା କଥା ମିଥ୍ୟା ଗଳ୍ପ ଅଟେ । ଲୋକେ ଅଜ୍ଞାନତା ହେତୁ ଜଗତ୍ ପ୍ରକୃତିର ଚମତ୍କାର ଘଟଣାମାନଙ୍କର ତତ୍ତ୍ୱ ବୁଝି ନ ପାରି, ନାନାବିଧ କାଳ୍ପନିକ କଥା ସିଦ୍ଧାନ୍ତ କରନ୍ତି । ଏସବୁ ବୁଝିବାକୁ ବିଦ୍ୟା, ବୁଦ୍ଧି, ଜ୍ଞାନ ଆବଶ୍ୟକ ।

**ନେମୀ—ମହାରାଜ** ! ଆଜି ଆପଣଙ୍କଠାରୁ ଅନେକ ଜ୍ଞାନ ପାଇଲୁଁ ।

**ସୁଧୀ—ସତେ ମ** ! ଏତେ କଥା କିଏ ବୁଝିଥାନ୍ତା ?

**ବାବାଜୀ**—ଆଜ୍ଞା, ତେବେ ବର୍ତ୍ତମାନ ଆସ, ରାତି ହେଲାଣି । କାଲେ ତୁମେମାନେ ଡରିବ, ଆମେ ତୁମକୁ କିଛିଦୂର ବଳେଇ ଦେଇ ଆସିବା ।

**ସୁଧୀ**—ଆଉ ଡର କୌଣସିକୁ ? ଆମେ ଚାଲିଯିବା, ଆପଣ କାହିଁକି କଷ୍ଟ ସହିବେ ?

**ବାବାଜୀ**—ନା, ଆମର କିଛି କଷ୍ଟ ହେବ ନାହିଁ, ତୁମର ହଠାତ୍ ଏତାଦୃଶ ଦମ୍ଭିତା ହୋଇ ନ ପାରେ । ଯଦ୍ୟପି ଆମର ଉପଦେଶକୁ ସର୍ବଦା ସ୍ମରିବ ଓ ଆଲୋଚନା କରିବ ତେବେ ତୁମର ମନ ଦୃଢ଼ ରୂପେ ମାନିବ ଓ ଦମ୍ଭିତା ହେବ । ବର୍ତ୍ତମାନ ଚାଲ ଆମେ ଛାଡ଼ି ଦେଇ ଆସୁଁ ।

[ ସମସ୍ତଙ୍କର ପ୍ରସ୍ଥାନ ]

(ଶିବମିଶ୍ର ଓ ଜେମସ୍ ଦଲେଇର ପ୍ରବେଶ)

ଜେମସ୍—କାହିଁ ? ବାବାଜୀ ତ କାହାନ୍ତି । ସେ ସ୍ତ୍ରୀମାନଙ୍କ ସାଙ୍ଗରେ ଗଲେ କି ? ହେଲ ! ବାବାଜୀଙ୍କ କଥା ଭାରି ଗଣ୍ଡୋଳ । ଭଣ୍ଡ ବାବାଜୀଟାଏ; ଭୁଗୁଲୁ ଏତେ ବାଟ ମାଗିଲୁଁ ।

ଶିବ—ନା, ନା, ସେ ପ୍ରକାର ଭଣ୍ଡ ବାବାଜୀ ନୁହନ୍ତି । ତାଙ୍କ କଥା ଅତି ଚମତ୍କାର, ତାଙ୍କୁ ଉପହାସ ବା ନିନ୍ଦା କରନା । କେତେ କେତେ ସାଧୁଙ୍କର ଏପରି ଶକ୍ତି ଥାଏ ଯେ, ସହସ୍ର କୋଶ ଅନ୍ତରରେ ତାଙ୍କର ପ୍ରସଙ୍ଗ ପଡ଼ିଲେ ସେ ସେହିକ୍ଷଣି ଜାଣିପାରନ୍ତି । ଏ ବାବାଜୀ ସେପରି ଶକ୍ତି ଦ୍ୱାରା ତୋର ଉପହାସ ଜାଣି ପାରିଲେ ବଡ଼ ବିଷମ ହେବ ।

ଜେମସ—ତେବେ ସେ କୁଆଡ଼କୁ ଗଲେ, ଏତେ ବାଟ ଆସି କଣ ବାହୁଡ଼ି ଯିବା ?

ଶିବ—ନା, ଯିବା କାହିଁ, ଦଣ୍ଡେ ଅପେକ୍ଷା କରିବା । ବୋଧ ହୁଏ ସେ ବାହାରକୁ ଯାଇଥିବେ ଏହିକ୍ଷଣି ଆସିବେ । ଏ ସ୍ଥାନର ଶୋଭା ଦେଖ୍ । ଆହା ! କେମନ୍ତ ମନୋରମ୍ୟ ହୋଇଛି ! ଚନ୍ଦ୍ର କିରଣରେ କେଡ଼େ ସୁନ୍ଦର ଦିଶୁଛି ! ବାବାଜୀ ଆଗ୍ରୁ ସ୍ଥାନଟିଏ ମନୋନୀତ କରିଛନ୍ତି । ସେ ଯାଉନ୍ତୁ, ଆମ୍ଭର ଦିନେ ଏଠାରେ ମଉଜ କରିବା । ସବୁ Friendsଙ୍କୁ (ସଙ୍ଗୀମାନଙ୍କୁ) ଓ ରାଧୀକୁ ଆଣିବା । ସେ ଏବେ କେଶ୍ ଗାଉଛି, କେମନ୍ତ ମଜା ହବ ?

ଜେମସ୍—ଯୋଉ ମଜା ହବ ସିଇ ତା କାହିଁକି କହୁଚ୍ ? ମଉଜକୁ ତ ସ୍ଥାନ ଇଏ ! ରାଧୀ, କେମୀ ଦୁହିଁଙ୍କୁ ଆଣିବା । ଜଣକେ କିଛି ଜମିବ ନାହିଁ, ନା ମଜା ହବ ନାହିଁ । Country ଓ Exshow (ଦେଶୀ ସୁରା ଓ ବ୍ରାଣ୍ଡି) ଏ ଦୁଇ ରକମ ଆଣିବାକୁ ହବ । ଏସବୁ ନ ହେଲେ କିଛି ମଜା ହବ ନାହିଁ ।

ଶିବ—ତା ନ ହେଲେ ଆଉ କଣ ହବ ? Wine and women are the to things in the world, Ah ! (ସୁରା ଓ ସ୍ତ୍ରୀ ସଂସାରରେ ସାର) ଆରେ ଆଜି କେମୀ ଓ ରାଧୀର ଗାଉଣା ହବାର ଥିଲା । ଏଠାକୁ ଆସିବାର ହବାରୁ ମନାକରି ପଠେଇଲି ।

ଜେମସ୍—ଆଜି ନ ହେଲା ନାହିଁ, ସେ ଦିନ ମନ ଇଚ୍ଛା ସବୁ ହବ । ହେଇ ବାବାଜୀ ଆସୁଚନ୍ତି ।

( ବାବାଜୀଙ୍କର ପ୍ରବେଶ )

( ଶିବ ଟ° ୧ ଓ ଜେମସ୍ ଟ• h ପ୍ରଣାମୀ ଦେଇ ପ୍ରଣାମ କଲେ )

ବାବାଜୀ—ମଙ୍ଗଳ ହଉ ବାବା, କୁଆଡ଼େ ଆସିବା ହେଲେ ?

ଶିବ—ଆପଣଙ୍କର ଚରଣ ସେବାକୁ ଆସିଲୁ ।

ବାବାଜୀ—ଆପଣଙ୍କର ନିବାସ ?

ଶିବ—ବଙ୍ଗ ଦେଶ ଆମର ମାତୃଭୂମି, କିନ୍ତୁ ଆମ ପିତାଙ୍କର ଏଠାରେ ବ୍ୟବସାୟ ହେବାରୁ ସେହି ସମୟରୁ ଏ ଦେଶରେ ରହୁଅଛୁଁ । ଆମର ମଧ୍ୟ ବ୍ୟବସାୟ ଅଛି ।

ବାବାଜୀ—ଏ ସବୁ କଣ ଏହିପରି ବ୍ୟବସାୟ ଛଳରେ ଏଠାରେ ରହୁଛନ୍ତି ?

ଶିବ—ଆଜ୍ଞା ନା, ସେ ଏ ଦେଶୀୟ ଓଡ଼ିଆ, ତାଙ୍କର ବ୍ୟବସାୟ ଥିଲା, ବର୍ତ୍ତମାନ ନାହିଁ ।

ବାବାଜୀ—କେମନ୍ତ ! ସେ ଓଡ଼ିଆ, ଠିକ୍ ବଙ୍ଗାଳୀ ପରି ଦିଶୁଛନ୍ତି ! ବର୍ଣ୍ଣରେ କଣ ?

ଶିବ—ସେ କିରସ୍ତାନ ।

ବାବାଜୀ—ଆପଣ ହିନ୍ଦୁ ପରା ?

ଶିବ—ଆଜ୍ଞା ।

କେମସ—ନାହିଁ ମହାରାଜ ସେ ହିନ୍ଦୁ ନୁହେଁ ନା ମୁସଲମାନ୍ ନୁହେଁ, କିରସ୍ତାନ ନୁହେଁ ନା ବ୍ରହ୍ମଜ୍ଞାନୀ ନୁହେଁ । ତାହାର କିଛି ଠିକ୍ ନାହିଁ ।

ଶିବ—ନାହିଁ ମହାରାଜ, ମୁଁ ହିନ୍ଦୁ, ସେ କଣ ଜାଣେ ? ଆପଣମାନେ କିରସ୍ତାନଙ୍କ ପ୍ରତି ବିରକ୍ତ ଥାନ୍ତି । ସେ କିରସ୍ତାନ ବୋଲି ମୁଁ କହିବାରୁ, ସେ ମୋ ଉପରେ ଚିଡ଼ି ଏପରି କହୁଛି ।

ବାବାଜୀ—ନାହିଁ, କିରସ୍ତାନଙ୍କ ପ୍ରତି କାହିଁକି ବିରକ୍ତ ହେବା ? ସେମାନଙ୍କ ମଧ୍ୟରେ ସୁଜ୍ଞା ଜ୍ଞାନୀ ଓ ଧର୍ମଶୀଳ ବ୍ୟକ୍ତି ଥାନ୍ତି ।

କେମସ୍—ହିଁ ମହାରାଜ, ମୁଁ କିରସ୍ତାନ ହେଲେ କଣ ହେଲା, ମୁଁ ସବୁ ମାନେ, ମୁଁ ସେପରି କୁଡ଼୍ କିରସ୍ତାନ ନୁହେଁ । (ଯୋଡ଼ହସ୍ତ ହୋଇ) ମହାରାଜ ! ଆମେ କିଛି କାମନାରେ ଆସିଚୁ ।

ବାବାଜୀ—ଦୁଇ ଏକଦଣ୍ଡ ପୂର୍ବେ ଆପଣମାନେ ତୋଟାର ସେ ପାଖରୁ ଆସିଥିଲେ କି ?

କେମସ୍—ଆଜ୍ଞା, ଆପଣଙ୍କ ଦର୍ଶନକୁ ଆସୁଥିଲୁ, ପୁଣି ଟିକିଏ ନଗ୍ର ଦେଖିବାକୁ ଚାଲିଗଲୁ ।

ବାବାଜୀ—ଆମ ଦ୍ୱାରା ତୁମର କି କାମନା ସିଦ୍ଧ ହୋଇପାରେ ?

କେମସ—ଆପଣଙ୍କ ମହିମାରେ ସବୁ ହୋଇପାରେ ।

ବାବାଜୀ—ଆମେ ତ ମନୁଷ୍ୟ ମାତ୍ର, ଆମର କି ମହିମା !

ଶିବ—ମହାରାଜ ! ତା କହିଲେ ଆମେ କି ମାନିବୁ ? ସିଦ୍ଧ ପୁରୁଷ ସାଧୁଙ୍କର ମହିମା ହୁଏ । ଏହା ଅନେକ ଶୁଣା ଅଛୁ ଓ ଦେଖା ଅଛୁ ।

ବାବାଜୀ—କଣ ଦେଖିଚ କହିଲ ?

ଶିବ—ବର୍ଷେ ହବ, ଜଣେ ପରମହଂସ ଆମ ଘରଠାରେ ପ୍ରବେଶ ହେଲେ, ତାଙ୍କର ଭୋଜନର ଆୟୋଜନ ହେଲରୁ ସେ ଆସନରେ ବସି ଆପଣା ତାଳୁ ଉପରେ ହାତମାର ଦିଅନ୍ତେ ମୂର୍ତ୍ତିଏ ଶାଳଗ୍ରାମ ତାଙ୍କ ପାଟି ଭିତରୁ ବାହାର ପଡ଼ିଲେ । ସେ ଶାଳଗ୍ରାମଙ୍କୁ ପୂଜାକର ଭୋଗ ଦେଇ ମୁଖ ମଧ୍ୟରେ ରଖି ଦିଅନ୍ତେ ଶାଳଗ୍ରାମ ତାଙ୍କର ମସ୍ତିଷ୍କ ଅର୍ଥାତ୍ ମଗଜ ମଧ୍ୟକୁ ଚାଲିଗଲେ । ସେ ପ୍ରତିଦିନ ଏହିପରି କରନ୍ତି । ମୋର ବାବା (ଖୁଡ଼) ପ୍ରାୟ ନାସ୍ତିକ, ବାବାଜୀଙ୍କ ଉପରେ ବଡ଼ ଚଟିନ୍ତି କିନ୍ତୁ ପରମହଂସଙ୍କର ଏପରି ମହିମା ଦେଖି ତାଙ୍କୁ ଅତି ସମ୍ମାନ କଲେ ଓ ବସ୍ତ୍ର ଇତ୍ୟାଦି ବିଦାକି ଦେଲେ । ମନୁଷ୍ୟର ମହିମା ନ ହୁଏ କିପରି ?

ବାବାଜୀ—ଆମେ ସେପରି ସିଦ୍ଧି ପୁରୁଷ ନୋହୁଁ । ଆମେ ତ ଭଣ୍ଡ ବାବାଜୀ, ଆମର କି ମହିମା ?

ଶିବ—ଏଡ଼େ ମୂର୍ଖ କିଏ ଅଛୁ ଯେ, ସେ କହିବ ଆପଣ ଭଣ୍ଡ ବାବାଜୀ, ଆପଣଙ୍କର କିଛୁ ମହିମା ନାହିଁ ।

ବାବାଜୀ—ତୁମ୍ଭେମାନେ କହିଚ କିମ୍ବା ତୁମ ମନରେ ଏପରି ବୈଗୁଣ୍ୟ ଜନ୍ମିଛି ।

ଶିବ—ଆମ ମନରେ ଏପରି ବୈଗୁଣ୍ୟ ଥିଲେ କି ରାତ୍ର କାଳରେ ଏତେ ବାଟ ଆସିଥାନ୍ତୁ ?

ବାବାଜୀ—ଏଠାକୁ ଆସିବା ଉତ୍ତାରେ ବୈଗୁଣ୍ୟ ଜାତ ହେଲା । ଆମକୁ ତାହା ଗୋଚର ହୋଇଚ ।

ଶିବ—(କେମସ୍ ପ୍ରତି) ଦେଖ, ମୁଁ କଣ କହୁଥିଲି ? ଏବେ ସମ୍ଭାଳ । ତୁ ଯୌଠି ଥିବୁ, ସବୁ ବିଗାଡ଼ିବୁ । (ବାବାଜୀ ପ୍ରତି) ହଁ ମହାରାଜ ଏ ବାବୁ ସେପରି କିଛି କଥା ଏହିଠାରେ କହୁଥିଲେ କିନ୍ତୁ ମୁଁ ତତ୍‌କ୍ଷଣାତ୍ ଚୋକି ଦେଇଛି ! ସେ କିରସ୍ତାନ, ତାଙ୍କର ସେତେଦୂର ଜ୍ଞାନ ନାହିଁ । କିରସ୍ତାନ ମାନେ ସାଧୁ ସନ୍ଥଙ୍କ କଥା କଣ ଜାଣନ୍ତି ? ତାଙ୍କ କଥା ଧର୍ତ୍ତବ୍ୟ ନୁହେଁ । ଯାହାହେଉ ଆମର ଦୋଷ ହେଇଛି, ଦୟା କରି ଦୋଷ କ୍ଷମା କରନ୍ତୁ ।

**କେଶବ**—(କରଯୋଡ଼ି) ମହାରାଜ ମୁଁ ବଡ଼ ଅପରାଧ କରିଛି । ଆପଣ ତପସ୍ୱୀଙ୍କ ଓ ଅତି ମହାନ୍ ଏ କ୍ଷୁଦ୍ର ଜୀବର ଦୋଷ କ୍ଷମା ନ କଲେ ଆଉ କିଏ କ୍ଷମା କରିବ ? "ଦଣ୍ଡିବା ଶକ୍ତି ଯାର ଥାଇ ଯେ ପୁଣି କ୍ଷମା ଆଚରଇ ।" (ପାଦତଳେ ପଡ଼ି) ମୋ ଦୋଷ କ୍ଷମା କରନ୍ତୁ ମହାରାଜ !

**ବାବାଜୀ**—ଉଠ ଉଠ ବାବା, ଆମେ ତୁମ ଦୋଷ କ୍ଷମା କଲୁଁ । ତୁମମାନଙ୍କର କି କାମନା ?

**ଶିବ**—ଆପଣ କଣ ତାହା ଜାଣି ନଥିବେ ଯେ, ଆମେ କହିବୁ କାହିଁକି ?

**ବାବାଜୀ**—ହଁ, ତୁମ କାମନା ବିଷୟ ମଧ୍ୟ ଆମକୁ ଗୋଚର ହୋଇଛି । ତୁମର ପିତା ବାତ ରୋଗରେ ଅତି ପୀଡ଼ିତ ଥିବାରୁ ତାଙ୍କର ଆରୋଗ୍ୟ ସକାଶେ ତୁମର କାମନା । ଏ ବାବୁଙ୍କର ସ୍ୱକଳ୍ପର କାମନା ।

**କେଶବ** (ଶିହରିତ) ଅହୋ ! ମହାରାଜଙ୍କର ଏପରି ମହିମା ! ମୁଁ ଚଣ୍ଡାଳ କଣ କହୁଥିଲି !

**ଶିବ**—ଆରେ ! ଏତ ସାମାନ୍ୟ କଥା, ଆଜି ଯେ ପ୍ରସଙ୍ଗ ଶୁଣିଚେଁ ତାହା କେଡ଼େ ଚମତ୍କାର !

**ବାବାଜୀ**—କଣ ଶୁଣିଚ କହିଲ । ସଂକ୍ଷେପରେ କହିବ ।

**ଶିବ**—ଆପଣ ମରା କଙ୍କା କୁକୁଡ଼ାକୁ ବଞ୍ଚାଇ ଦେବା ହେଲେ ସେ ପୁଣି ଜଣେ ମନୁଷ୍ୟର ପ୍ରାଣ ନେବାକୁ ବସିଲା । ଏହା କି ସାମାନ୍ୟ କଥା ?

**ବାବାଜୀ**—ଆଉ ଆମେ ସବୁ ପାରବୁ ନାହିଁ । ଏହିକ୍ଷଣି ଦୁଇଜଣ ମୂର୍ଖ ସ୍ତ୍ରୀ ଯେପରି କହୁଥିଲେ, ତୁମେ ବିଦ୍ୟାବନ୍ତ ବ୍ୟକ୍ତି ହୋଇ ସେହିପରି କହୁଛ । ବୁଦ୍ଧି ଓ ଜ୍ଞାନ ପାଇଁ ବିଦ୍ୟା ଶିକ୍ଷା, କିନ୍ତୁ ତୁମମାନଙ୍କର ଜ୍ଞାନ ବୁଦ୍ଧି କିଛିହିଁ ଦେଖୁନାହୁଁ । "ଯାହା ନ ଦେଖିବ ଦୁଇ ନୟନେ । ପରତେ ନ ଯିବ ଗୁରୁ ବଚନେ ।" ଏପରି ଅସମ୍ଭବ କଥା ଶୁଣିଲା ମାତ୍ରକେ ତହିଁରେ ବିଶ୍ୱାସ କଲ, ପୁଣି ତା କହୁଚ, ବଡ଼ ଆଶ୍ଚର୍ଯ୍ୟ ! ବୁଝିଲ, ତାହା ସମସ୍ତ ମିଥ୍ୟା । ମନୁଷ୍ୟର ଅଲୌକିକ ମହିମା କଦାପି ହୋଇ ନପାରେ ।

**କେଶବ**—ତେବେ ଆପଣ ଆମ କାମନା କିପରି ଜାଣି ପାରିଲେ ? ଆମର ନାମ ପୁଣି ଏପର୍ଯ୍ୟନ୍ତ କହି ନାହୁଁ କିମ୍ବା ଆମ ମନକଥା ଅନ୍ୟ କାହାରିଠାରେ ପ୍ରକାଶ କରିନାହୁଁ । ଏ ଅବସ୍ଥାରେ ଆପଣ ମହିମା ବା କର୍ଣ୍ଣପିଶାଚ ବିଦ୍ୟା ବଳେ ଆମ ମନ କଥା ଜାଣିଥିବେ, ସନ୍ଦେହ ନାହିଁ ।

ବାବାଜୀ—କର୍ଣ୍ଣପିଶାଚ ବିଦ୍ୟା ମଧ୍ୟ ସମ୍ପୂର୍ଣ୍ଣ ମିଥ୍ୟା । ଯେ ଦୁଇଜଣ ବୈଷ୍ଣବ ଆସିଥିଲେ ସେମାନେ କହୁଥିଲେ କି ଜଣେ ବଙ୍ଗାଳୀ ବାବୁ ଆସିବେ ତାଙ୍କର ପିତା ବାତ ରୋଗରେ ଅତି ପୀଡ଼ିତ ଅଛନ୍ତି । ଏ ବାବୁ ତୁମର ପରିଚୟ ଦେଲା-ବେଳେ କହିଥିଲେ ଯେ ତୁମର ସ୍ତ୍ରୀ ଜୀବିତ ଥିଲା, ବର୍ତ୍ତମାନ ନାହିଁ । ଏତିକି ସଙ୍କେତରୁ ଆମେ ବୁଦ୍ଧି ବଳରେ ତୁମ କାମନା କଥା ଅନୁମାନ କରି କହିଲୁଁ ।

ଜେମସ୍—ଆଚ୍ଛା, ମୋ ମନର ବୈଗୁଣ୍ୟ ବିଷୟ କିପରି ଜାଣିଲେ ? ନାହାକ ଦୁଇ କାନରୁ ଅଧିକ ହୋଇନାହିଁ କିମ୍ବା ତହିଁର କିଛି ସଙ୍କେତ ପାଇନାହାନ୍ତି । ଆପଣ ମତେ ଭୁଲେଇଲେ କି ମୁଁ ଭୁଲିବି ? ହେଉ ମହାରାଜ ! ଆମ ଉପରେ ଟିକିଏ ପ୍ରସନ୍ନ ହୁଅନ୍ତୁ ।

ବାବାଜୀ—ତୁମର ମନର ବୈଗୁଣ୍ୟ କଥା ମଧ୍ୟ ଆମେ ଅନୁମାନ କରି କହିଲୁଁ । ତୁମେ ଯେତେବେଳେ ତୋଟାର ସେ ପାର୍ଶ୍ୱକୁ ଆସିଥିଲ, ସେତେବେଳେ ଆମ ନିକଟରେ ସ୍ତ୍ରୀଲୋକ ଅବଶ୍ୟ ଦେଖିଥିବ । ପୁନର୍ବାର ଆସିଲାବେଳକୁ କାହାରିକୁ ନ ଦେଖିଲ । ଆମର ଆଚରଣ ତୁମକୁ ଜଣାନାହିଁ ଓ ତୁମର ମନ ଦୁର୍ବଳ ଓ ଅପରିଷ୍କୃତ । ଏ ଅବସ୍ଥାରେ ତୁମ ମନରେ ବୈଗୁଣ୍ୟ ଜନ୍ମିଥିବ, ଏହା ସ୍ଥିର ଆମେ କହିଥିଲୁଁ । ଦେଖ ତାହା ଠିକ୍ ଘଟିଲା । ଏହି ପ୍ରକାରରେ ଶଠ ସାଧୁମାନେ ଲୋକଙ୍କୁ ଭଣ୍ଡନ୍ତି । ହୋ ତୁମକୁ ପ୍ରତ୍ୟକ୍ଷ ଦେଖାଇବା ପାଇଁ ଆମେ ପ୍ରଥମେ କପଟ କରି ଏପରି ଭଙ୍ଗିରେ କହିଥିଲୁଁ । ଏହି ପ୍ରକାର ସବୁ ଜାଣିବ । ମହିମା, କର୍ଣ୍ଣପିଶାଚ ବିଦ୍ୟା ସମ୍ପୂର୍ଣ୍ଣ ମିଥ୍ୟା ।

ଶିବ—ଆଚ୍ଛା, ସେ ପରମହଂସ ମୂର୍ତ୍ତିଏ ଶାଳଗ୍ରାମ ମୁଖରୁ ବାହାର କରନ୍ତି କିପରି ?

ବାବାଜୀ—ବାଜିକର ଖେଳା ମୁଖରୁ ଅବିର ଓ ଟଙ୍କା ପଇସା ବାହାର କରେ କିପରି ? ଜଣେ ଇଂରେଜ ବାଜିକର ଟୋପି ମଧ୍ୟରୁ ଏତେ ଗୁଡ଼ିଏ ପେଣ୍ଡୁ ବାହାର କଲା ଯେ ସେ ସବୁ ପୁଣି ଟୋପିରେ ପୁରେଇଲାବେଳକୁ ତହିଁରେ ସ୍ଥାନ ନ ହେଲା । ସେ ପରମହଂସ ମୁଖରୁ ଗୋଟିଏ ଶାଳଗ୍ରାମ ବାହାର କରିବାର କି ଆଶ୍ଚର୍ଯ୍ୟ ? ଏହା କୁହୁକ ଅଟେ, ମହିମା ନୁହେଁ । ତାହାର ମହିମା ଥିଲେ ସେ ଦ୍ୱାର ଦ୍ୱାର ବୁଲନ୍ତା ନାହିଁ ।

ଶିବ—ଆଜ୍ଞା, ତାହା କୁହୁକ ହୋଇପାରେ ।

ଜେମସ୍—ହଉ, କୁହୁକ ହେଲେ କଣ ହେଲା, ମନ୍ତ୍ର ବଳ ତ ହେଲା । ମନ୍ତ୍ରଯୋଗେ କୁହୁକ ହୁଏ ଓ ମହିମା ମଧ୍ୟ ହୁଏ ।

ବାବାଜୀ—ହୋ ! ଏ ବାବୁଙ୍କର ତ ସ୍ୱର ଭ୍ରମ । କୁହୁକ ମନ୍ତ୍ର ବଳରେ ହୁଏ ନା, କିମ୍ବା ମନ୍ତ୍ରର କିଛି ହିଁ ବଳ ନାହିଁ । ମନ୍ତ୍ରର ବଳ ଥିଲେ ବାଜିକର ଭେଲା ଦୁଇ ଗୁଣ ଅଣା ପାଇଁ ଦ୍ୱାର ଦ୍ୱାର ନ ବୁଲି ମନ୍ତ୍ର ବଳରେ ଟଙ୍କା କଡ଼ି ଟାଣି ଆଣୁଥାନ୍ତା । ବାସ୍ତବରେ କେତେ କୁହୁକ ଚତୁରତା ଓ ଚଞ୍ଚଳତା ଦ୍ୱାରା ହୁଏ, କେତେକ ଦ୍ରବ୍ୟ ଗୁଣରେ ହୁଏ, କେତେକ କଳ କୌଶଳେ ଓ ଯନ୍ତ୍ର ସହାୟତାରେ ହୁଏ । ଇଂରେଜମାନେ ମନ୍ତ୍ର ମନ୍ତ୍ର ନାହିଁ କିମ୍ବା ଜାଣନ୍ତି ନାହିଁ, ସେମାନେ କିପରି ଭେଲାଙ୍କଠାରୁ ଅଧିକ ଚମତ୍କାର କୁହୁକ ଦେଖାନ୍ତି ? ଆମେ ଗୋଟିଏ କୁହୁକ ତୁମକୁ ବୁଝାଇ ଦେଉଛୁ, ଶୁଣ । ରବର ନାମରେ ଏକ ପ୍ରକାର ଅଠାବନ୍ତ ଦ୍ରବ୍ୟ ଅଛି ତାହା ଟାଣିଲେ ବଢ଼ଇ ଚପିଲେ ଯାଇ ଜୁଆଇ । ତହିଁର ପୋଲ ପେଣ୍ଡୁ ତିଆରି ହୋଇ ଟୋପିର ଲୁଗା ମଧ୍ୟରେ ପଶିଥାଏ, ସେ ପେଣ୍ଡୁରେ ରନ୍ଧ୍ର ଥାଏ, ତାହା ଲୁଗା ମଧ୍ୟରୁ ବାହାର କଲେ ବାୟୁ ସହାୟତାରେ ତାହା ଫୁଲି ବଡ଼ ପେଣ୍ଡୁ ପରି ଦିଶେ । ସେ ପରମହଂସ କଳନଙ୍କର ସେହିପରି ରବରପେଣ୍ଡୁକୁ ପାଟି ମଧ୍ୟରେ ପୂର୍ବରୁ ଯାଇ ରଖିଥିଲା, ତୁମ ସାକ୍ଷାତରେ ଗୁଣ୍ଡରୁ ବାହାର କଲାରୁ ତାହା ଫୁଲି ଶାଳଗ୍ରାମ ରୂପେ ଦୃଶ୍ୟ ହେଲା, ପୁଣି ତାହା ମୁହଁ ମଧ୍ୟରେ ପୂରେଇ କଳରେ ଯାଇ ରଖିଲା, ପଶ୍ଚାତ୍ ବାହାର କରି ଗଣ୍ଠି ମଧ୍ୟରେ ରଖିଥିବ । ଏହି ପ୍ରକାର ସୂତ୍ରରେ ସବୁ କୁହୁକ ହୁଏ । ବୁଝିଲ ?

ଶିବ—ହଁ ମହାରାଜ ! ବୁଝିଲୁଁ ।

ବାବାଜୀ—କୌଣସି ଧର୍ମରେ ତୁମର ବିଶ୍ୱାସ ହେଉନାହିଁ । ସର୍ବକର୍ତ୍ତା ଈଶ୍ୱରଙ୍କଠାରେ ମତି ହେଉନାହିଁ, ଅସମ୍ଭବ କଥାରେ ବିଶ୍ୱାସ ହେଉଛି ଓ ଅଳୀକ ଆମୋଦ ପ୍ରମୋଦରେ ମତ୍ତ ରହୁଛ, ବଡ଼ ଆଶ୍ଚର୍ଯ୍ୟ ଓ ଦୁଃଖର ବିଷୟ । (କେମିତି ପ୍ରତି) ତୁମେ ବୁଦ୍ଧଧର୍ମର ସାରକଥାରେ ଅବିଶ୍ୱାସ କରି ସେ ଧର୍ମ ତ୍ୟାଗ କଲ, ମାତ୍ର ଅସାର କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ ଅଛି, ଅଜ୍ଞାନତା ଓ କୁସଂସ୍କାର ଲେଶ ମାତ୍ର ଯାଇନାହିଁ । ଜ୍ଞାନ, ଧର୍ମ ଶିକ୍ଷା କର ମନୁଷ୍ୟ ଜନ୍ମ ସଫଳ କର । ଏଥିରେ ତୁମମାନଙ୍କର ପ୍ରକୃତ ମଙ୍ଗଳ ହେବ । ଆଚ୍ଛା, ବର୍ତ୍ତମାନ ଆସ । ତୁମର ଦଣ୍ଡବତ୍ତା ଫେରି ନିଅ ।

ଶିବ—ଆପଣଙ୍କୁ ଦେଇଛୁଁ, ଆଉ କାହିଁକି ଫେରନେବୁଁ ।

ବାବାଜୀ—ଟଙ୍କା ଦେଉଛରେ ଆମର କିଛି କାର୍ଯ୍ୟ ନ ଥାଏ, ଆମର ତା ଲୋଡ଼ା ହେବ ? ତୁମର କିଛି କାର୍ଯ୍ୟରେ ଆସିପାରେ । ଅଷ୍ଟପ୍ରୟୋଜନରେ ଦେବାନେବାର ଉଚିତ ନୁହେଁ ଆମେ ନବୁ ନାହିଁ, ତୁମେ ଫେରି ନିଅ ।

କେମସ୍—(ସ୍ୱଗତ) ବାବାଜୀ ତ ଆମ ପାଦର ସାହେବ ପରି ବୁଝେଇଲେ, ଖ୍ରୀଷ୍ଟଧର୍ମ ବିଷୟରେ ସାହେବ ଯାହା କହନ୍ତି ତାହା ସତ ଅଟେ ।

ଶିବ ଓ କେମସ୍—(ପ୍ରଣାମ କରିନେଇ) ଆଚ୍ଛା, ମହାରାଜ ! ଆମେ ଆସିଲୁଁ । ଦଣ୍ଡବତ ।

ବାବାଜୀ—ମଙ୍ଗଳ ହେଉ, ଧର୍ମରେ ମତି ଓ ଈଶ୍ୱରଙ୍କଠାରେ ଭକ୍ତି ହେଉ ।

[ଶିବ ଓ କେମସ୍‌ଙ୍କର ପ୍ରସ୍ଥାନ]

(ଆନନ୍ଦ ପୂର୍ଣ୍ଣାସ୍ତର ପ୍ରବେଶ)

ବାବାଜୀ—କିରେ ବାବା, ପୁଣି କାହିଁକି ?

ପୂର୍ଣ୍ଣାସ୍ତ—ମହାରାଜ ! ଆଜି ମୁଁ ବଡ଼ ଅପରାଧ କରିଛି. ଆପଣ ଆସିଲାବେଳୁଁ, ମୋ ମନ ଯେପରି ସନ୍ତାପିତ ହେଉଛି ତାହା ମୋ ମନହିଁ ଜାଣେ । ଆପଣଙ୍କୁ ଭୋଜନ ନ କରାଇଲେ ମୋ ମନ ସ୍ଥିର ହେବ ନାହିଁ । ଠାକୁରଙ୍କର ପ୍ରସାଦ ଆଣିଛି, ଆପଣ ଅନୁଗ୍ରହ କରି ଏହା ଭୋଜନ କରିବା ହେଉନ୍ତୁ । ନ ହେଲେ ମୁଁ ଅତି ଦୁଃଖିତ ହେବି, ମରଣ ତୁଲ୍ୟ ତ ହେବ, ଅଧିକ କଣ କହିବି ?

ବାବାଜୀ—ଆମ ପାଇଁ ପ୍ରସାଦ ଆଣିଛୁ । ଆଚ୍ଛା ଆଚ୍ଛା, ତୋର ଏପରି ସୁମତିରେ ଆମେ ଅତି ସନ୍ତୁଷ୍ଟ ହେଲୁଁ । କିନ୍ତୁ ଆମେ ତୋତେ ଗୋଟିଏ ଗୁପ୍ତ ପ୍ରସଙ୍ଗ ପଚାରିବା, ତୁ ସତ୍ୟ କହିବାର ପ୍ରତିଜ୍ଞା କଲେ ଆମେ ପ୍ରସାଦ ପାଇବା; ନଚେତ୍ ଗ୍ରହଣ କରିବା ନାହିଁ ।

ପୂର୍ଣ୍ଣାସ୍ତ—ମହାରାଜ ! ମୁଁ ଯାହା ଜାଣିଥିବି ଅବଶ୍ୟ କହିବି । ଆପଣ ଭୋଜନରେ ବସନ୍ତୁ । କଥା ବାର୍ତ୍ତା ହେବା, ଭୋଜନବେଳେ ଗପ ହେଲେ ବଡ଼ ସୁଖ ହୁଏ ।

ବାବାଜୀ—ସତ, ଆଚ୍ଛା କ'ଣ ଆଣିଛୁ ଆଣ ।

(ବାବାଜୀ ଭୋଜନରେ ବସିଲେ)

ପୂର୍ଣ୍ଣାସ୍ତ—ଏ ସ୍ଥାନଟି ଅତି ଉତ୍ତମ, ବଡ଼ ନିରୋଳା, ଲୋକଙ୍କର ଅଧିକ ଗତାୟାତ ନାହିଁ, ଆପଣଙ୍କୁ ଭଲ ହେଉଥିବ ।

ବାବାଜୀ—ନାହିଁ ବାବା, ତୋର ଯୋଗେ ଦୁଇ ଚାରି ଲୋକ ଆସି ଆମକୁ ବିରକ୍ତ କଲେଣି ।

ପୂର୍ଣ୍ଣାସ୍ତ—ମୋ ଯୋଗେ କିପରି ମହାରାଜ !

ବାବାଜୀ ତୁ ଉପହାସରେ ଆମର ମହିମା କଥା ଯାହା କହୁଥିଲୁ, ଲୋକେ ତାହା ସତ ବୁଝି ଆମ ଠାକୁ ଆପଣା କାମନା ସିଦ୍ଧି ପାଇଁ ଆସିଥିଲେ । ଭଲ, ଏପରି ମିଥ୍ୟା କଥା କାହିଁକି ରଟାଇ ଦେଲୁ ?

ପୂଜାରୀ—ମହାରାଜ ! ମୁଁ କାହାରିକୁ ଏ ପ୍ରସଙ୍ଗ କିଛି କହି ନାହିଁ । ଦାମା ଯେ କଥା ଶୁଣି ଅଧିକରେ ତାହାରିକୁ କହିଥିବ, ସେ ନିଜ ଢଙ୍ଗରେ ଆଉ କିଛି ବ୍ୟତିକ୍ରମ କରିଥିବ, ଏହି ପ୍ରକାରରେ ସେ କଥା ସର୍ବତ୍ର ପ୍ରଚାର ହୋଇଥିବ । ମୂର୍ଖ ଲୋକେ କୌଣସି କଥା ଠିକ୍ କରି ବୁଝିବେ ନାହିଁ ନା ଠିକ୍ କରି କହିବେ ନାହିଁ । ସ୍ୱାଭାବିକ ବେଗ ଉପସ୍ଥିତ ହେଲେ ନାନାଦି ଅସମ୍ଭବ କଥା କହାରେ, ଚାଲାଣୀମାନେ ଠାକୁରାଣୀ ଲାଗିବାର ଛଟାକରି ନାନାଦି କଥା କହି ଆପ୍ତୁପଣେ ଉପାର୍ଜନ କରନ୍ତି ବା ମାନ୍ୟ ପାଆନ୍ତି । ଖଳ ଲୋକେ କିଛି ଲକ୍ଷଣାରେ ବା କୌତୁକ ଦେଖିବା ପାଇଁ ନାନାଦି ଅଳ୍ପ ପଡ଼ିବା କହାଇ କରନ୍ତି । ପ୍ରାୟ ସମସ୍ତେ ଚିତ୍ତରେ ବିଶ୍ୱାସ କରି ତଦନୁସାରେ କାର୍ଯ୍ୟ କରନ୍ତି । ଅଜ୍ଞ ଇତର ଲୋକଙ୍କ କଥା କେଣିକି ଥାଉ, କେତେକ ବାବୁ ଭଇୟା ମଧ୍ୟ ଏ ସବୁ ମାନନ୍ତି, କିନ୍ତୁ ମୁଁ ମାନେ ନା । ମୁଁ ଦୁଷ୍ଟ ହେଲେ କଣ ହେଲା ? ମୋର ବୁଦ୍ଧି ଅଛି, ସାହସ ଅଛି ମୁଁ ମୁଦା ଧରି କେତେ ଚାଲାଣୀଙ୍କୁ ଭଣ୍ଡାର କରି ଦେଇଛି ।

ବାବାଜୀ—ଲୋକେ ଏପରି ଅବୋଧ, ବଡ଼ ଦୁଃଖର ବିଷୟ । ବାବୁଙ୍କର ସବୁ କୁଶଳ ତ ?

ପୂଜାରୀ—ଆଜି ବାବୁଙ୍କର ଅନନ୍ତ ଶଯ୍ୟା କାଲିକୁ ଯେପରି ହେବ । ଆଜି ସେ ଅଛନ୍ତି, ଆମେ ଅଛନ୍ତି । ହଁ ସବୁ କୁଶଳ ।

ବାବାଜୀ—ତୋର ଅନ୍ନଦାତାଙ୍କୁ ଉପହାସ କରୁଛୁ !

ପୂଜାରୀ—ନାହିଁ ଉପହାସ କରୁ ନାହିଁ ଯେ । ମୁଁ କେତେବେଳେ କେମନ୍ତେ ଟିକିଏ ରଙ୍ଗରେ କଥା କହି ଦିଏଁ । ବାବୁଙ୍କ ସଙ୍ଗରେ ମଧ୍ୟ ଦୁଃଖ ସୁଖ ପଡ଼େ, ହସ କୌତୁକ ହୁଏ । ଅସ୍ତୁ ବାବୁ, ଯେପରି ଗୁଣବନ୍ତ ସେହିପରି ଶାନ୍ତ ଓ ଦୟାବନ୍ତ, ଧନର ଅହଙ୍କାର ଟିକିଏ ନାହିଁ । ଆପଣ କି ଗୁପ୍ତ କଥା ପଚାରିବାର କହୁଥିଲେ ?

ବାବାଜୀ ସତ କହିବୁଟି କି କପଟ କରିବୁ ତ ନାହିଁ ?

ପୂଜାରୀ—ନାହିଁ ମହାରାଜ, କପଟ କରିବି ନାହିଁ । ଏବେ ହୁଡ଼ିଲି ବୋଲି କି ସବୁ ଥର ହୁଡ଼ିବି ? ଲୋକ ଦେଖି ବ୍ୟବହାର କରିବାକୁ ହୁଏ ନା ?

ବାବାଜୀ—"ଲୋକ ଦେଖି ବ୍ୟବହାର କରିବାକୁ ହୁଏ"—ଏଥିର ଅର୍ଥ କଣ ?

ପୁଷ୍ପାଶ୍ୱ—ଭଲ ଲୋକ ସଙ୍ଗରେ ଭଲ ବ୍ୟବହାର, ମନ୍ଦ ଲୋକ ସହିତ ମନ୍ଦ ବ୍ୟବହାର । ଯେ ମୋର ମନ୍ଦ କଲା ମୁଁ ତାକୁ କାହିଁକି ଛାଡ଼ିବି ? ମୁଁ ମଧ୍ୟ ତାହାର ମନ୍ଦ କରିବି ।

ବାବାଜୀ—ନା ନା, ଏହା ଉଚିତ ନୁହେଁ, ଯେଉଁ ବ୍ୟକ୍ତି ତୋହର ମନ୍ଦ କଲା, ସେ ଦୋଷୀ ହେଲା । ସେ ତାହିଁର ଦଣ୍ଡ ଇହକାଳ ବା ପରକାଳରେ ନିଶ୍ଚୟ ପାଇବ । ତୁ ଯେବେ ତାହାର ମନ୍ଦ କଲୁ ତୁ ମଧ୍ୟ ସେହିପରି ଦୋଷୀ ହେଲୁ, ସେହିପରି ଦଣ୍ଡ ପାଇବୁ । ତେବେ ତୋର ଲାଭ କଣ ? ତାହାର ପ୍ରତି ଅଯଥାର୍ଥ ବ୍ୟବହାର କରିବାର ଉଚିତ ନୁହେଁ ।

ପୁଷ୍ପାଶ୍ୱ—ସତ । ସେତେ ଜ୍ଞାନ ଆମର ନ ହେବାରୁ ତ ଏତେ ଦଶା । ଗୁପ୍ତ କଥାଟି କଣ କହିବା ହେଉନ୍ତୁ ।

ବାବାଜୀ— ତୁ ଗାରୁଡ଼ି ବିଦ୍ୟା ଜାଣୁ ?

ପୁଷ୍ପାଶ୍ୱ—ହଁ ମହାରାଜ, ମୁଁ ଆଜ୍ଞା ଜାଣେ ।

ବାବାଜୀ—ହନୁସିଂହର ସ୍ତ୍ରୀଠାରୁ ତୁ ଭୂତ ଛଡ଼ାଇଥିବାର ଆମେ ଶୁଣିଚୁଁ । ତାହିଁର ପ୍ରକୃତ କଥା କହନ୍ତ ?

ପୁଷ୍ପାଶ୍ୱ— ମହାରାଜ ! 'ଷଟ୍କର୍ଣ୍ଣ ମନ୍ତ୍ରଭେଦ' ଏପରି ନିଷେଧ ଅଛି ମୁଁ ତାହା କହିବି ନାହିଁ, ତାହା ପ୍ରକାଶ ହେଲେ ମୋ ବୃତ୍ତି ମରିଯିବ । ମୋ ଦୋଷ କ୍ଷମା କର ।

ବାବାଜୀ— ଆମେ ନିଶ୍ଚୟ କହୁଚୁଁ, ତୋ କଥା କଦାପି ପ୍ରକାଶ କରିବୁ ନାହିଁ । କାଲି ତ ଆମେ ଏଠାରୁ ଚାଲିଯିବା, କହିବା ଅବା କାହା ଆଗରେ ? ଗୁଣି ବୃତ୍ତିଟି ଠକ ବୃତ୍ତି, ଆମେ ଏହା ଜାଣୁ । ଏଥିଲାଗି 'ଷଟ୍ କର୍ଣ୍ଣ ମନ୍ତ୍ରଭେଦ' ନିଷେଧ ରହିଚି ହେଉଚି । ତୁ କପଟ ଠକୁ, ଏହିକି ଜାଣିବାର ଆମର ଇଚ୍ଛା । ତୁ ଯେବେ ପ୍ରତିଜ୍ଞା ଲଙ୍ଘନ କରିବୁ ତେବେ ଆମେ ଆଉ ଭୋଜନ କରିବୁ ନାହିଁ ।

ପୁଷ୍ପାଶ୍ୱ—ମୁଁ କହୁଚି, ମହାରାଜ ଭୋଜନ କରନ୍ତୁ ଆପଣଙ୍କୁ ଦୋହି ପରମେଶ୍ୱରଙ୍କର, କଦାପି ପ୍ରକାଶ କରିବେ ନାହିଁ । ହନୁସିଂହର ସ୍ତ୍ରୀ ସଙ୍ଗେ ମୋର ପ୍ରଣୟ ଅଛି । ମୋର ନାମ ବାହାର ହବା ସକାଶେ ମୋହର ଶିକ୍ଷାରେ ସେ ଛଳ

ନିକଟର, ଗୁଣିମାନେ ଝାଡ଼ିଲେ କେବଳ ସେମାନଙ୍କ ଉପରେ ଚଢ଼ି ବସିବ । ମୋର ଜଣେ ସଙ୍ଗୀ ଅଛୁ, ସଙ୍ଗୀ ନ ଥିଲେ ଗୁଣି ବିଦ୍ୟା ଭଲ ଚଳଇ ନାହିଁ । ସେ ହନୁସିଂହ ନିକଟରେ ମୋର ଖୁବ ପ୍ରଶଂସା କରିବାରୁ ହନୁ ମୋତେ ଡାକିଲା । ମୁଁ ଯାଇଁ ତାହାର ସ୍ତ୍ରୀକୁ ଝାଡ଼ିଲା ମାତ୍ରକେ ସେ ଭଲ ହୋଇଗଲା; ତହୁଁ ମୋର ନାମ ଖ୍ୟାତ ହେଲା । ଏବେ ଯେଉଁଠି ଭୂତ ଲାଗୁଛି ଆଗେ ମୋତେ ଡାକରା ପଡ଼ୁଛି । ଭୂତ ମିଛ, ସେମାନେ ଆପଣାର କିଛି ଅଭିପ୍ରାୟରେ ଛଳ କରିଥାନ୍ତି, କଷ୍ଟ ନାଶରେ ଆକ୍ରାନ୍ତ ହୁଅନ୍ତି । ଛଳ ନଥିଲେ ବାତ ପିତ୍ତ ବା ଅନ୍ୟ କିଛି ରୋଗ ଥାଏ, ମାତ୍ର ଏହା କ୍ୱଚିତ ଘଟେ ।

ବାବାଜୀ—ତେବେ ତୁହି ଭୂତ ହୋଇ ଲାଗିଲୁ, ତୁହି ଗୁଣିଆ ହୋଇ ଝାଡ଼ିଲୁ? ଏତକିରେ ତୋର ନାମ ବାହାରିଲା, ନା, ଆଉ କିଛି ଉପାୟ କରିଥିଲୁ?

ସୁଙ୍ଘା - ଆଉ କିଛି କରିଥିଲି—ଜଣକୁ ଦୁଇଟଙ୍କା ଦେଇ କରଗତ କଲି । ଖଣ୍ଡେ ଭଙ୍ଗା ଚୁଙ୍ଗି, ନଖ ଓ ଚେରକୁ ବାଳରେ ଗୁଡ଼େଇ ତାକୁ ଦେଇ କହିଲି କି ଯେତେବେଳେ ମୋ ନିକଟରେ ଅନେକ ଲୋକ ଥିବେ ତୁ ସେତେବେଳେ ମୋଠାକୁ ଏହାକୁ ଘେନି ଆସି କହିବୁ— ସୁଙ୍ଘା ! ଆପଣ କାଲି ଯେ ପାଣି ମନ୍ତ୍ରି ଦେଇଥିଲେ ସେ ପାଣି ପିଇବାର ଦଣ୍ଡାକରେ ବାନ୍ତି ହୋଇ ଏ ଔଷଧ ମୋ ପେଟରୁ ବାହାରି ପଡ଼ିଲା । ଆଜି ମୋ ଦେହ ବାର ପଣରେ ଭଲ ହେଇଛି, ମୁଁ ରୋଗ ଚୁର୍ଣ୍ଣ କେତେ ଔଷଧ କଲି କିଛି ଧରିଲା ନାହିଁ । ଏହି କମିଆଡ ମୋତେ ଖାଉଥିଲା, ଔଷଧ ସୁଦ୍ଧା କରନ୍ତା କିଆଁ? ମୋ ପ୍ରାଣ ଓଠରେ ପଡ଼ିଥିଲା ଆପଣଙ୍କ ଯୋଗେ ପ୍ରାଣ ପାଇଲି । ଏହା କହି ମୋତେ ଟଙ୍କାଟିଏ ଦେଇ ଗୋଡ଼ତଳେ ପଡ଼ିବୁ, ବାକି ଦୁଇଟଙ୍କା ତୋହୋର । ସେ ଠିକ୍ ଏହିପରି କଲା । ଦେଖିବା ଲୋକେ ଚକିତ ହୋଇ ମୋର ବଡ଼ ପ୍ରଶଂସା କଲେ, ମୋ ନାଁ ବାଜିଗଲା ।

ବାବାଜୀ—ଆଚ୍ଛା, ବଳି ମାହାନ୍ତି ଘରେ ଭୂତର ଉତ୍ପାତ ବୃତ୍ତାନ୍ତ କହିଲୁ ?

ସୁଙ୍ଘା—ବଳି ମାହାନ୍ତି ସଙ୍ଗେ ମାଗୁଣି ମାହାନ୍ତିର ଖାଉ ବିବାଦ । ବଳି ଘରେ ଭୂତ ବା ଖାର ବାହୁଥାର ଉତ୍ପାତ କରେଇବା ପାଇଁ ମାଗୁଣି ମୋତେ ଦଶ ଟଙ୍କା ଯାଚିଲା । ତହୁଁ ମୁଁ ବଳିର ଦାସୀକୁ କରଗତ କରି ତାହା ଦ୍ୱାରା ଓ ମୋହର ସଙ୍ଗୀ ଦ୍ୱାରା ତାହା ଘରେ ନାନାଦି ଉପଦ୍ରବ କରେଇଲି । ଏଥି ମଧ୍ୟରେ ମୋର କପାଳ ସୁଯୋଗକୁ ଦିନେ ରାତ୍ରରେ ବଳିର ବଡ଼ ପୁଅ ନିଦ ବାଉଳା ରୋଗରେ ଅଚେତନ ଅବସ୍ଥାରେ ଦୁଇ ପା ବାଟ ଚାଲିଯାଇ, ଗୋଟିଏ ଗାଡ଼ିଆରେ ପଡ଼ିଯିବାରୁ ତାହାର ଚେତନା ହେଲା । ଏ ରୋଗରେ ଲକ୍ଷଣ

ଏହି ପ୍ରକାର, କନ୍ୟା ଲୋକେ ବୁଝିଲେ ଭୂତ ତାକୁ ଛଡ଼େଇ ନେଇ ଗଡ଼ଆରେ ମାଡ଼ି ଦେଲା । କନ୍ୟା ବଡ଼ ଡାକର ହୋଇ ମୋତେ ପନ୍ଦର ଟଙ୍କା ଯାଚବାକୁ ଲୋକ ଦେଖିବାକୁ ପୂଜା କରି ବୁଜୁଡ଼ା କରି ଦେଲି । ଡାକ୍ତରଠାରୁ ଔଷଧ ମାଗିଆଣି ତାହାର ପୁଅକୁ ଖୁଆଇଲି, ସବୁ ଶାନ୍ତ ହୋଇଗଲା । ବନ୍ଧ୍ୟା ସ୍ତ୍ରୀଙ୍କ ଯୋଗେ ମଧ୍ୟ ଏହିପରି ଭୂତ ବା ପୀରର ଉତ୍ପାତ ହୋଇଥାଏ । ଜଣେ ବଙ୍ଗାଳୀ ବ୍ରାହ୍ମଣୀ ଆପଣାର ମନ୍ଦ କାମନାର ସୁବିଧା ପାଇଁ ଜଣ ଭୂତର ଉତ୍ପାତ ଏପରି ଭଙ୍ଗିରେ ରଚନା କଲା ଯେ, ଭୟରେ ତାହାର ଘର ଲୋକେ ତାନ ସକାଶେ ଗୋଟିଏ ଘର ଛାଡ଼ି ଦେଲେ । ବର୍ଷେକାଳ ଏହିପରି ଚାଲିଗଲା, ଦେଖା ଗଲେ ଜଣ ଭୂତ (ବନ୍ଧ ପୁରୁଷ) ସେ ସ୍ତ୍ରୀର ସ୍ୱାମୀ ଦ୍ୱାରା ଧରାପଡ଼ିବାରୁ ଉତ୍ପାତ ଶାନ୍ତ ହେଲା ।

ବାବାଜୀ—ଆଉ କଣ ଜାଣୁ କହନ୍ତୁ ?

ପୂଜାରୀ—ମୋର ତ ସବୁ ବଦନାମ ନେବ, ମୁଁ ଆଉ କହିବି କଣ ?

ବାବାଜୀ—ଆରେ, ଆମେ କାହିଁକି ତୋର ବଦନାମ ନେବା ? ଶୁଣିବାକୁ କୌତୁକ ଲାଗୁଛି, କହ କହ ।

ପୂଜାରୀ—ଏ ଦେଶରେ ଉତ୍ତମ ବଇଦ ନ ଥିବାରୁ ରୋଗ ବିଷୟରେ ଆଉ ଭ୍ରମ ଅଛି । ରକ୍ତପିତ ରୋଗରେ ରକ୍ତବାନ୍ତି ହେଲେ କିମ୍ବା କୌଣସି ବାତ ରୋଗରେ ଦେହରେ ଚୁଟି ମାଇଲା ପରି ଜଣାଗଲେ, ଲୋକେ ତାକୁ ବାଣ ଅହିଁବାର ବୋଲି ବିଶ୍ୱାସ କରନ୍ତି । ବାତ ବା ମନ୍ଦାଗ୍ନି ରୋଗରେ ରୋଗୀ ଅତି କ୍ଷୀଣ ଓ ଦୁର୍ବଳ ହେଲେ ତାକୁ କେହି ମୁଳ ମନ୍ଦରଙ୍ଗା ବା କଡଛାଲଗା କମିଥାଁ କରିଥିବାର ଲୋକେ ମନେ କରନ୍ତି । କୌଣସି ରୋଗ ଚଣ୍ଟା ନ ଗଲେ କିମ୍ବା ଚକିତ୍ସା ଦୋଷରେ ଦେହ ବିକୃତଭାବ ଧରିଲେ ରୋଗୀକୁ କେହି କିଛି ଯାଦୁ ଟୋଣା କରିଥିବାର ବିଶ୍ୱାସ ହୁଏ । ଏ ସ୍ଥଳେ ଆମର ଉପାସ୍ୟ ହୁଏ । କୌ କୌ ସ୍ଥଳେ ଆମେ ରୋଗୀ ପେଟରୁ ଯାଦୁ ଔଷଧ ବାହାର କରି ଦେଖାଇ ଦେଉ ।

ବାବାଜୀ—ଏହା କି ପ୍ରକାର ହୁଏ ?

ପୂଜାରୀ—ଟିକିଏ ତେଲ ଓ ନଖକୁ କାଳରେ ପୁଡ଼ିଏ ପୂର୍ବରୁ ପାଟି ମଧ୍ୟରେ ଯାକି ରଖୁଁ । କିଛି ପୂଜା କରି ରୋଗୀ ପେଟରେ ଗ୍ଲେଟ ନଳଟିଏ ବସେଇ ମାଡ଼ି ଦେଉଁ ଓ ନଳି ଛଡ଼େଇ ତୁଠାରୁ ଫୁଙ୍କି ଦେଉଁ, ଫୁଙ୍କ ସହିତ ସେ କୃତ୍ରିମ ଔଷଧ ନଳ ମଧ୍ୟରେ ଯାଇ ତଳେ ପଡ଼େ । ଲୋକେ ବୁଝନ୍ତି ମନ୍ତ୍ରବଳରେ ଔଷଧ ପେଟରୁ ବାହାରି ପଡ଼ିଲା । କୌ କୌ ସ୍ଥଳେ କେବଳ ପୂଜା କରୁଁ,

ଏଣେ ବୈଦ୍ୟ ଚକିତ୍ସା ମଧ୍ୟ ହେଉଥାଏ । ଦୈବାଂ କେହି କେହି ଭଲ ହେଲେ ଗୁଣୀର ନାମ ହୁଏ । ମାତ୍ର କେବଳ ଗୁଣୀ ଉପରେ ନିର୍ଭର କରି ଅନେକ ଲୋକ ମରି ପଡ଼ନ୍ତି । କିନ୍ତୁ ଜଣେ ବାବୁଙ୍କୁ ମୁଁ ଭଲ କରିଚି । ତାଙ୍କୁ ଜ୍ୱର ରୋଗରେ ବଇଦ ଅତି ଗରମ ଔଷଧ ଖୁଆଇବାରୁ ଜ୍ୱର ଛଣାହେଲା ମାତ୍ର ଗରମ ଯୋଗେ ଅରୁଚି, କଣ୍ଠ ଶୁଷ୍କ, ଦେହର ଦାହ ଇତ୍ୟାଦିରେ ବାବୁ ଶଯ୍ୟାଗତ ହେଲେ । ବଇଦର ବୁଦ୍ଧି ବଣା ହେଲା । ସେ କହିଲା ନାଡ଼ିରେ ଜର ନାହିଁ, ଏ ସବୁ କମିଥାର ଫିସାଦ । ତହୁଁ ବାବୁ ମୋତେ ଡାକିଲେ । ମୁଁ ଗରମ କଥା ବୁଝି ପାରିଲି ମାତ୍ର ତାହା ପ୍ରକାଶ ନ କରି, ବାବୁଙ୍କୁ କାଞ୍ଜି ପାଣି ପିଆଇଲି । ମନ୍ତ୍ର ହଳଦୀ ଲଗାଇବାକୁ ଦେଲି ଓ ପୂଜା କଳଶ ଜଳରେ ସ୍ନାନ କରାଇଲି । ଏହି ଶୀତଳ ଉପଚାରରେ ବାବୁ ଭଲ ହେଲେ । ଆହାର ଦୋଷରେ ଅଜୀର୍ଣ୍ଣ ହେଲେ, ଭୋଜନରେ କାହାର ମନ୍ଦ ଦୃଷ୍ଟି ହୋଇ ଥିବାର ଓ ବାଇ ଯୋଗେ ଅଥବା ଧାତୁ ଗୁଣେ ପ୍ରସବ ବେଦନା ଅଧିକ ହେଲେ ତାଙ୍କୁ କେହି ବନ୍ଧ ଥିବାର ବିଶ୍ୱାସ ହୁଏ । ଏ ସ୍ଥଳେ ପାଣି ମନ୍ତ୍ରି ଦେଉଁ, ପାଣିଯୋଗେ ଅବା ସ୍ୱଭାବରେ ଭଲ ହେଲେ ମନ୍ତ୍ରର ନାମ ହୁଏ । ସବୁ ମନ୍ତ୍ର ଏହି ପ୍ରକାର, ମାତ୍ର ସାପ ମନ୍ତ୍ର ମତେ କିଛି ଠିକ୍ ବୋଧ ହୁଏ, କାରଣ ମୁଁ କେବେ କେବେ କେବଳ ମନ୍ତ୍ର ଯୋଗେ ବିଷ ଉତ୍ତାରିଚି ।

ବାବାଜୀ—ନା ନା, ତାହା ମଧ୍ୟ ଠିକ୍ ନୁହେଁ । ତହିଁର କଥା ତେବେ ତୁ ବୁଝୁ ନାହୁଁ । ଯେଉଁ ସ୍ଥଳରେ କେବଳ ମନ୍ତ୍ର ଯୋଗେ ବିଷ ଉତୁରେ, ସେ ସ୍ଥଳେ ଆଦୌ ବିଷ ନ ଥାଏ । ପୃଥିବୀରେ ୩୩୮ ସୁଦ୍ଧା ୨୭୫ ଜାତିର ସର୍ପ ଅଛନ୍ତି । ତହିଁ ମଧ୍ୟରେ କେବଳ ୪୮ ଜାତିର ବିଷ ଅଛି । ବାକି ସର୍ପର ବିଷ ନାହିଁ । ବିଷାକ୍ତ ସର୍ପ ମଧ୍ୟ କ୍ରୁପିତ ନହୋଇ କାମୁଡ଼ିଲେ କିମ୍ବା ତାହାର ବିଷଦନ୍ତ ଝଡ଼ି ଯାଇଥିଲେ, ବିଷ ଚଢ଼ଇ ନାହିଁ । ଏପରି ଦଂଶନ ସ୍ଥଳେ କେବଳ ଭୟରେ ଦଂଶିତ ବ୍ୟକ୍ତିକୁ ବିଷଜ୍ୱାଳା ଜଣାଯାଏ ଓ କେହି କେହି ମୂର୍ଚ୍ଛା ହୋଇପଡ଼ନ୍ତି । ତୁହ୍ମ ଗୁପଡ଼ା, ଆଉଁସିବା, ଫୁଙ୍କ ଓ ପାଣି ଯୋଗେ ଭୟ ଭାଙ୍ଗେ ଓ ଚେତନା ହୁଏ କିନ୍ତୁ ମନ୍ତ୍ରର ନାମ ହୁଏ ।

ପୂଝାରୀ—ହଁ, ଏଇଟା ହବ; ଠିକ୍ କଥା । ମନ୍ତ୍ରର ବଳ ଥିଲେ ଝାଡ଼ୁ ଝାଡ଼ୁ ବିଷ ଚଢ଼ନ୍ତା ନାହିଁ; ନା କେହି ମରନ୍ତେ ନାହିଁ ।

ବାବାଜୀ—ଆଉ କଣ ଜାଣୁ ?

ପୂଝାରୀ—କିଅଁା କଣିକୁ ଚିରି ଦୁଇ ଫାଳକୁ ଚରି ପାଖ ଭିତରକୁ କରି ଦୁଇଜଣ ଦୁଇ ମୁଣ୍ଡ ଧରିଲେ ଦୁଇ ଫାଳ ଆପଣା ଘୁକେ ଟାଣି ହୋଇ ମଝିରେ ଲାଗିଯାଏ ।

ସ୍ୱଭାବରେ ଏପରି ହୁଏ କିନ୍ତୁ ମୁଁ ଏହା କେତେକ ଉପାୟରେ ପ୍ରୟୋଗ କଲେ ଲୋକେ ବୁଝନ୍ତି ମନ୍ତ୍ର ବଳରେ ଦୁଇଫାଳ ଲାଗିଯାଏ । ମାମଲତକାର-ଠାରୁ ପୂଜା ଖର୍ଚ୍ଚ ନେଇ ମକଦ୍ଦମାର ଅବସ୍ଥା ଦୃଷ୍ଟିରେ ଡିକ୍ରି ହେବାର ସମ୍ଭବ ଦେଖିଲେ, ଜୟ ହେବାର କହେଁ; ନଚେତ୍ କିଛି କଷ୍ଟ ଲେଖିବାର କହେଁ । ଢାଲସୁପାରି ଲଢେଇରେ ଯେତେ କାଣ୍ଡ ହୁଏ ସେ ସବୁ ଦୁଇ ଗୁଣୀଙ୍କ ଯୋଗ ସାଜସରେ ହୁଅଇ । ଜିଣିବା ବ୍ୟକ୍ତି ଯାହାପାଏ ତାହା ଦୁହେଁ ପଶ୍ଚାତ୍ ବାଣ୍ଟି ନିଅନ୍ତି । ଏହିପରି ମୁଁ ଯେତେ ଜାଣେ ସେ ସବୁ କହିଲେ ରାତି ପାହିଯିବ । ଆପଣ ତ ଜାଣନ୍ତି, ମନ୍ତ୍ର ଯୋଗେ ଭଲମନ୍ଦ କିଛି ହୋଇ ନପାରେ । ମୁଁ ଅଧିକ କଣ କହିବି । ଏତିକି କହୁଚି ଏହା ପ୍ରକାଶ କରି ମୋ ଦାନାରେ ଧୂଳି ଦେବେ ନାହିଁ ।

ବାବାଜୀ—କଳିକାଳର ବ୍ରାହ୍ମଣ ଗାୟତ୍ରୀ ଛାଡ଼ି ଗାରଡ଼ି ଶିଖିବ ର କଥାଟି ଠିକ୍ ଅଟେ ।

ପୂଜାରୀ—ମୁଁ ଗାୟତ୍ରୀ ଶିଖି ନାହିଁ କି ?

ବାବାଜୀ—କଣ ଶିଖିଚୁ କହିଲୁ ?

ପୂଜାରୀ—ମହାରାଜ ! ଆପଣଙ୍କଠାରେ କଣ କପଟ କରିବି ? ଗାୟତ୍ରୀ ପଦେ ମନେ ପଡ଼ୁଚି, ପଦେ ମନେ ପଡ଼ୁନାହିଁ । ପିଲାଦିନେ ଗାୟତ୍ରୀ ଓ ପୂଜା ମନ୍ତ୍ରଗୁଡ଼ାଏ ଶିଖିଥିଲି, ବର୍ତ୍ତମାନକୁ ଅନେକ ପାସୋରି ଗଲଣି ।

ବାବାଜୀ—ତେବେ ଠାକୁର ପୂଜା କରୁ କିପରି ?

ପୂଜାରୀ—ମାରି ତାଳି, ଉଠା ଥାଳି । ନାକ କାନ ଛୁଇଁ, ଘଣ୍ଟି ବଜାଇଲେ ହେଲା । ଠାକୁରଙ୍କ ବେଶ କରିଦେଲେ ଲୋକେ ଦେଖି ପ୍ରେମରେ ଗଡ଼ିଯାନ୍ତି, ମନ୍ତ୍ର କଥା କିଏ ବୁଝୁଚି ? ଅନେକ ପୂଜାରୀଙ୍କ ପୂଜା ଏହି ପ୍ରକାର ।

ବାବାଜୀ—ତୁ ବୃଦ୍ଧ ଠକଟିଏ । ହଁ, "ରଜା ଖାଏ ଚଣ୍ଡି, କେଳା ଖାଏ ଭଣ୍ଡି ।"

ପୂଜାରୀ—ମୁଁ ଠକ କିପରି ? ଗୁଣି ବ୍ୟବସାୟ ତ ଏହି ପ୍ରକାର, ମୁଁ ତ ଗୁରୁଠାରୁ ଏହିପରି ଶିକ୍ଷା ପାଇଚି । ଅନ୍ୟ ଲୋକ ପରି ଗୁଣି ବିଦ୍ୟାରେ ମୋର ବିଶ୍ୱାସ ଥିବାରୁ, ଗାରି ସାଧନା କରିବାର ମୋର ବଡ଼ ଇଚ୍ଛା ହେଲା । ତହୁଁ ମୁଁ ଜଣେ ପ୍ରଧାନ ଗୁଣୀକୁ ଗୁରୁ କଲି । ସେ ମୋତେ ଏହି ପ୍ରକାର ଶିକ୍ଷାଦେଇ କହିଲେ ମନ୍ତ୍ର, ଭୂତ, ଗାରି, ବାଉଁଶ ସବୁ ମିଛ । ସେପରି ଲୋକଙ୍କୁ କହିବାକୁ ହୁଏ । ମୁଁ ତ ଏକା ନୁହେଁ । ସକଳ ଗୁଣୀଙ୍କର କାଣ୍ଡ ଉଣା ଅଧିକରେ ଏହି ପ୍ରକାର । ଆମେ ତ ବଳେ ବଳେ ବଳେ କାହାରିଠାକୁ ଯାଉ ନା, ଲୋକେ ଆମକୁ ନେହୁରା କରି ଡାକନ୍ତି । କହିଲ କଣ କାହାରିକୁ ପୀଡ଼ା ହେଉଚି ?

ବାବାଜୀ—ଅଜ୍ଞାନତା, ଭ୍ରମ ଓ କୁସଂସ୍କାର ହେତୁ ଲୋକଙ୍କର ଗୁଣି ବିଦ୍ୟାରେ ବିଶ୍ୱାସ ଥିବାରୁ ସେମାନେ ଗୁଣିଙ୍କୁ ନେହୁରା କରନ୍ତି, ନଚେତ୍ ପଚାରନ୍ତେ ନାହିଁ। ତୁ ଯେବେ ଜାଣିଶୁଣି ସେମାନଙ୍କୁ ଭଣ୍ଡିଲୁ ତେବେ ତୁ ଠକ ହେଲୁନାହିଁ ?

ପୂଝାରୀ—ଏକ ପ୍ରକାର ହେଉଛି।

ବାବାଜୀ—ତେବେ ତୁ ଏ ବ୍ୟବସାୟ ଛାଡ଼ିଦେ। ଠକ ବୃତ୍ତି ବଡ଼ ମନ୍ଦ।

ପୂଝାରୀ—ଏ ବୃତ୍ତି ଛାଡ଼ିଦେଲେ ମୋ ସଂସାର ଚଳିବ କିପରି ? ବାବୁଙ୍କଠାରୁ ଦେଢ଼ଟଙ୍କା ଦରମାହା ପାଏଁ। ସେଥିରେ କି ମୋ କୁଟୁମ୍ବ ପୋଷା ଯିବେ ? ଆପଣ ଯିନା ଧନ ଦଉଡ଼ି କାଟିଦେଇ ବସିଛନ୍ତି। ମୋ ବେକରେ ପାଞ୍ଚ ପାଣୀ ବନ୍ଧା।

ବାବାଜୀ—ତେବେ କିଛି ସଦୁପାୟ କରି କଉଡ଼ି ଉପାର୍ଜ୍ଜନ କର, ଅସତରେ ରହନା।

ପୂଝାରୀ—ବୁଝିଲ ନାହିଁକି ମହାରାଜ ! ଯେ ସତରେ ରହିଲା, ସେ ମରି ପଡ଼ିଲା। ଯେ ଅସତ୍‌ରେ ରହିଲା, ତାହାର କଉଡ଼ି ମାଡ଼ିଗଲା।

ବାବାଜୀ—ନା ନା, ଏହା ବଡ଼ ଭ୍ରମାତ୍ମକ ଅଟେ। ସତରେ ପଣେ ଭଲ, ଅସତ୍‌ରେ କାହାଣେ ଭଲ ନୁହେଁ। "ଅସତ୍ ଧନ ଫଳେ ବହୁତ, ଯିବା ବେଳେ ଯାଏ ମୂଳ ସହିତ।"

ପୂଝାରୀ—ତାହା ମୁଁ ଜାଣେ ନାହିଁକି ? ସେ ତ ପଛର କଥା, ବର୍ତ୍ତମାନକୁ ଲୋଭ ସମ୍ଭାଳିବାର କଠିଣ, ପୁଣି ମୁଁ ଜାତିରେ ବ୍ରାହ୍ମଣ।

ବାବାଜୀ—ତେବେ ଲୋଭଇ ତୋ ବେକରେ ବନ୍ଧା, ପାଞ୍ଚପ୍ରାଣୀ ନୁହେଁ। ଆଚ୍ଛା କି ଇଚ୍ଛାରେ ତୋର ଲୋଭ ହୁଏ ?

ପୂଝାରୀ—କିପରି ପଣେ ଲାଭ କରି ସୁଖରେ ରହିବି, ଏହି ମୋହର ଇଚ୍ଛା।

ବାବାଜୀ—ଏ ଇଚ୍ଛା ମନ୍ଦ ନୁହେଁ ବରଂ ଗୃହୀଙ୍କ ପକ୍ଷରେ ଏହା ଉଚିତ କିନ୍ତୁ ଅନ୍ୟାୟ ରୂପେ ଲାଭ କରିବାର ଉଚିତ ନୁହେଁ। କଥାରେ କହନ୍ତି "ଅନ୍ୟାୟରେ କଉଡ଼ାଏ ନେଲେ କାହାଣେ ନଷ୍ଟ ହୁଏ।" ଅତଏବ ପରକୁ ଠକିଲେ ଲାଭ ନାହିଁ, କେବଳ ଅଲାଭ। ମିଥ୍ୟା, ପ୍ରବଞ୍ଚନା ଅପହରଣ ଇତ୍ୟାଦି ଅସତ୍ ଉପାୟରେ ଅର୍ଥ ଲାଭ ହୁଏ ସତ, କିନ୍ତୁ ପରିଶେଷେ ସେ ସବୁରୁ ଅନେକ ଅନର୍ଥ ଜାତ ହୁଏ। ସେ ସବୁ ପାପ ଅଟେ, ପାପର ଅଳକ ସୁଖ କ୍ଷଣ କାଳର କିନ୍ତୁ ତହିଁର ଅସୀମ ଅସୁଖ କାଳ କାଳର। ଯଦି ଲାଭ ଓ ସୁଖର ଇଚ୍ଛା ଅଛି ତେବେ ଯେପରି ଇହକାଳ ଓ ପରକାଳରେ ଲାଭ ଓ

ସୁଖ ହବ ସେପରି କରିବାର ଉଚିତ । ସଂସାର କେତେ କାଳର ? ତୁ ଶୁଣି ବ୍ୟବସାୟରେ କେତେ ମିଥ୍ୟା ଆଉ କହୁଥିବୁ । "ନାନୃତାତ୍ ପାତକଂ ପରଂ" । ଅର୍ଥାତ୍ ମିଥ୍ୟାରୁ ବଳି ପାତକ ନାହିଁ । ଏ ସବୁ ଛାଡ଼ିଦେଇ ପରିଶ୍ରମ ଓ ଯତ୍ନ କଲେ ସଦୁପାୟରେ ଯଥେଷ୍ଟ ଉପାର୍ଜନ ହୋଇପାରେ ।

ପୂର୍ଣ୍ଣ—ହଁ । ଠିକ୍‌କଥା, ଦେଖି ଯେମନ୍ତେ ହବ । ଆପଣଙ୍କଠାରୁ ଅନେକ ଜ୍ଞାନ ପାଇଲି । ଆପଣ ଗୁରୁଦେବଙ୍କୁ ବଳିଲେ ଯଥାର୍ଥ ଗୁରୁତ ଆପଣ ହେଲେ । ମୋ ଲାଗି ଆପଣ ଅନେକ କଷ୍ଟ ପାଇଲେ ଏହା ମୋ ମନରୁ ଯିବନାହିଁ, ରାତି ବିଶେଷ ହେଲାଣି ଆପଣ ଶୟନ କରନ୍ତୁ ମୁଁ ଆସେଁ ।

ବାବାଜୀ—ଅଚ୍ଛା ବାବା ଆ, ଆମ କଷ୍ଟକଥା ତୋ ମନରୁ ଯାଉ ମାତ୍ର ଉପଦେଶ ସବୁ ଯେପରି ତୋ ମନରୁ ନ ଯାଉ ।

ପୂର୍ଣ୍ଣ—(ଆନନ୍ଦିତ ହୋଇ) ଆପଣ ସେଇ କଲ୍ୟାଣ କରନ୍ତୁ । ନମସ୍କାର ।

ବାବାଜୀ—ନମସ୍କାର । ଈଶ୍ୱର ସେହିପରି ସୁମତି ଦିଅନ୍ତୁ ।

ଆଶୀର୍ବାଦ

